



# ଭାରତର
# ପ୍ରଥମ
# ଗଣ-ବିପ୍ଳବ

# ଉତ୍ସର୍ଗ

ମୋ ଦେଶର ପୂର୍ବସୂରୀ, ସେହି ଜ୍ଞାତ ଓ ଅଜ୍ଞାତ ବୀର ଶହୀଦମାନଙ୍କର ମହାନ୍ ସ୍ମୃତି ଉଦ୍ଦେଶ୍ୟରେ—ଯେଉଁମାନେ ନିଜର ରକ୍ତ ଢାଳି, ଅନ୍ଧକାରାଚ୍ଛନ୍ନ ଏ ଦେଶରେ ଜାଳି ଯାଇଛନ୍ତି ଆଲୋକବର୍ତ୍ତିକା—

—ଲେଖକ

ପ୍ରଥମ ମୁଦ୍ରଣ
୨୩ ଅକ୍ଟୋବର, ୧୯୭୫

ମୂଲ୍ୟ—ଚୂଶଟଙ୍କା ମାତ୍ର

ପ୍ରକାଶକ : ଏନ୍. ଏଲ୍. ଗୁପ୍ତା
ଜନଶକ୍ତି ପୁସ୍ତକାଳୟ
ବାଙ୍କା ବଜାର, କଟକ-୨

ପ୍ରଚ୍ଛଦ ଶିଳ୍ପୀ : ଅସିତ୍ ମୁଖାର୍ଜି
ଶିଳ୍ପ ରୂପମ୍
କଟକ-୨

ମୁଦ୍ରାକର : ଜାନକୀନାଥ ହାଲଦାର
ପାୟୋନିଅର ପ୍ରେସ
କଟକ-୧

ପ୍ରଚ୍ଛଦପଟ ମୁଦ୍ରଣ : ରୟାଲ ହାଫ୍‌ଟୋନ୍
ନୟାସଡ଼କ
କଟକ-୧

"ଯେଉଁ ଲୋକମାନେ ସେମାନଙ୍କ ପୁରାତନ ଇତିହାସ ଓ ସାହିତ୍ୟ ବିଷୟରେ ଗର୍ବ ଅନୁଭବ ନ କରନ୍ତି ସେମାନେ ଆପଣା ଜାତୀୟ-ଜୀବନର ମୂଳଦୁଆ ହରାଇବସନ୍ତି । ଯେଉଁ ଜାତି ଯେତେବେଳେ ରାଜନୈତିକ ଅବନତିର ଚରମ ସୀମାରେ ପହଞ୍ଚେ, ସେତେବେଳେ ତାର ପ୍ରାଚୀନ ସାହିତ୍ୟ ଆଡ଼କୁ ଝୁଙ୍କେ ଏବଂ ପୁରାତତ୍ତ୍ୱ ଆଲୋଚନା କରି ଭବିଷ୍ୟତ ଲାଗି ବନ୍ଧ ବାନ୍ଧେ ।"

—ମାକ୍ସ ମୁଲର

# ଗ୍ରନ୍ଥପଞ୍ଜି

1. Orissa, by W. W. Hunter. Vol. 1 & II.
   (Smith, Elder & Co 1872 Edition.)
2. History of Orissa II by R. D. Banerji.
   (1931 Edition)
3. The Gajapati kings of Orissa
   by P. Mukharji.
4. A History of Orissa I. by Dr. N. K. Sahu.
5. History of Orissa by Dr. H. K. Mahatab.
6. The Freedom movement in Orissa Vol. I.
7. A Sketch of the History of Orissa. by Toynbee.
8. An account of Orissa proper—Stirling.
9. ଗତ ଶତାବ୍ଦୀର ଓଡ଼ିଶା—ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
10. ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ
11. ଓଡ଼ିଶାର ଇତିହାସ—ପ୍ୟାରୀମୋହନ ଆଚାର୍ଯ୍ୟ
12. ଉତ୍କଳ ଇତିହାସ—କୃପାସିନ୍ଧୁ ମିଶ୍ର
13. The Orissa Historical Research Journal
    Vol. I. No. 2.
14. Statistical Account of Bengal
    Vol. XIX. Puri tributary states of Orissa
    by W. W. Hunter, B. A., LLD.
    (Trubner & Co, London ( 1877 Edition )
15. ଶ୍ରୀ କେଦାରନାଥ ମହାପାତ୍ରଙ୍କର 'ସମାଜ'ରେ ପ୍ରକାଶିତ ପ୍ରବନ୍ଧ
16. ଫିରିଙ୍ଗି କଳି ଭାରତ (ତାଳପତ୍ର ପୋଥି).

# ପଢେ଼ କଥା

ଖୋରଧା କଲେଜ କର୍ତ୍ତୃପକ୍ଷ ୧୯୬୧ ମସିହାରେ ଘୋଷଣା କରନ୍ତି, ଖୋରଧା ପାଇକ ବିଦ୍ରୋହ ସମ୍ପର୍କରେ, ଓଡ଼ିଶାର କଲେଜ ଛାତ୍ରମାନଙ୍କ ଦ୍ୱାରା ରଚିତ ସର୍ବଶ୍ରେଷ୍ଠ ପ୍ରବନ୍ଧକୁ ଏକଶତ ଟଙ୍କା ବା ସ୍ୱର୍ଣ୍ଣପଦକ ପୁରସ୍କାର ଏବଂ ଦ୍ୱିତୀୟ ବିବେଚିତ ପ୍ରବନ୍ଧ ପାଇଁ ପଚିଶ ଟଙ୍କା ବା ରୌପ୍ୟ କପ୍ ପୁରସ୍କାର ।

ଏହି ପୁରସ୍କାର, ପ୍ରତି ବର୍ଷ ବିଭିନ୍ନ ବିଷୟ ଉପରେ ରଚିତ ପ୍ରବନ୍ଧ ପାଇଁ ଆନ୍ତଃକଲେଜ ପ୍ରତିଯୋଗିତା ହିସାବରେ କଲେଜ ତରଫରୁ ପ୍ରଦତ୍ତ ହେଉଛି ।

ସର୍ବେ ଦୁଇମାସର ଅକ୍ଲାନ୍ତ ପରିଶ୍ରମ, ବହୁସ୍ଥାନ ଅନୁସନ୍ଧାନ ଓ ବହୁ ପୁସ୍ତକ ଓ ସରକାରୀ ରେକର୍ଡ଼ ଅଧ୍ୟୟନର ଫଳ, ସନ୍ନିବେଶିତ ପ୍ରବନ୍ଧଟି । ବହି ଭିତରୁ ଯେତିକି ଜାଣିଲି, ଖୋରଧା ସବ୍‌ଡ଼ିଭିଜନ, ଆଖପାଖ ବହୁ ଅଞ୍ଚଳ ବୁଲିବୁଲି, ଲୋକମାନଙ୍କ ସହିତ ସାକ୍ଷାତ କରି, ତା'ଠାରୁ ଜାଣିଲି ଢେର ବେଶୀ । ପୁରସ୍କାର ପାଇବା ଆଶା ଅପେକ୍ଷା, ସେହି ସବୁ କଥା ପୁଙ୍ଖାନୁପୁଙ୍ଖ ରୂପେ ଜାଣିବା ପାଇଁ ପ୍ରବଳ ଆଗ୍ରହ ଜନ୍ମିଲା ।

ପ୍ରବନ୍ଧଟି ଦାଖଲ କଲି, ଯେତିକି ବିଷୟ ଦେଇ, ତା'ଠାରୁ ଅନେକ ଅଧିକ ତଥ୍ୟ ମୋ ପାଖରେ ରହିଗଲା । ସମୟ ଅଭାବରୁ ଓ ପ୍ରବନ୍ଧର ସୀମା ନିର୍ଦ୍ଦିଷ୍ଟ ଥିବାରୁ, ସେ ସବୁର ସଙ୍କଳନ ଓ ସଂଯୋଜନ ସମ୍ଭବ ହୋଇ ନଥିଲା । କିନ୍ତୁ ମୋତେ ଯେତିକି ଜଣା, ମୋର ଦୃଢ଼ ବିଶ୍ୱାସ, ଏବେ ବି ଆହୁରି ଅନେକ ତଥ୍ୟ, ଘଟଣା, କାହାଣୀ, କିମ୍ବଦନ୍ତୀ, ପୋଥି ଆକାରରେ ଏ ଦେଶର ଗାଁ ଗହଳର କନ୍ଦିବିକନ୍ଦିରେ ପଡ଼ି ରହିଛି । ତାକୁ ଉଦ୍ଧାର କରିବାପାଇଁ, ମନବଳ ହୁଏତ ଅଛି—କିନ୍ତୁ ବହୁ ଅର୍ଥ, ଶ୍ରମ ଲୋଡ଼ା । ବ୍ୟକ୍ତିଗତ ଭାବେ ଏହା ଅସମ୍ଭବ ।

ଏହି ପ୍ରବନ୍ଧଟି ସର୍ବଶ୍ରେଷ୍ଠ ବିବେଚିତ ହେବାପରେ, ଖୋର୍ଦ୍ଧା କଲେଜ କର୍ତ୍ତୃପକ୍ଷଙ୍କ ପ୍ରଦତ୍ତ ୧୯୬୨ ଫେବ୍ରୁୟାରୀ ୨୮ ତାରିଖ କଲେଜ ପ୍ରତିଷ୍ଠା ଦିବସର ଉତ୍ସବ ଦିନରେ ଓଡ଼ିଶାର ଶିକ୍ଷାବିଭାଗ ଡ଼ି: ପି: ଆଇ:

ଡକ୍ଟର ସଦାଶିବ ମିଶ୍ରଙ୍କ ଦ୍ୱାରା ପ୍ରଥମ ପୁରସ୍କାର ଭାବରେ ଏକଶତ ଟଙ୍କା ପାଇ, ମୁଁ ଉତ୍ସାହ ପାଇଛି ଏବଂ ଏବେ ଜନଶକ୍ତି ପୁସ୍ତକାଳୟର କର୍ତ୍ତା ଶ୍ରୀ ଗୁପ୍ତା ତାକୁ ଲୋକଲୋଚନ ଗୋଚରକୁ ଆଣିଛନ୍ତି । ସେମାନଙ୍କୁ ମୋର ଅନ୍ତରର ଧନ୍ୟବାଦ ଜ୍ଞାପନ କରୁଛି । ବିଶେଷ କରି ଖୋରଧା କଲେଜର ସମ୍ପାଦକ ପିତୃପ୍ରତିମ ଶ୍ରୀ ପ୍ରାଣନାଥ ପଟ୍ଟନାୟକ ଓ ପୂଜ୍ୟ ଅଧ୍ୟକ୍ଷ ଶ୍ରୀ ମୃତ୍ୟୁଞ୍ଜୟ ମହାପାତ୍ରଙ୍କ ଉତ୍ସାହ ଦାନ ଅବିସ୍ମରଣୀୟ ।

ଏହି ଅଞ୍ଚଳର ବହୁ ବିଶିଷ୍ଟ ବ୍ୟକ୍ତି ମୋତେ ତଥ୍ୟ ଯୋଗାଇବାରେ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରିଛନ୍ତି । ତା'ନ ହୋଇଥିଲେ ମୋର ଚେଷ୍ଟା ବିଫଳ ହୋଇଥାନ୍ତା । ସେମାନଙ୍କ ମଧ୍ୟରୁ ଖୋର୍ଦ୍ଧାର ତତ୍କାଳୀନ ଏସ୍. ଡି. ଓ. ଶ୍ରୀ ଏ, କେ, ରାୟ, ଆଇ. ଏ. ଏସ୍., ଖୋର୍ଦ୍ଧା ବକସି ଜଗବନ୍ଧୁ ବିଦ୍ୟାଧର ହାଇସ୍କୁଲର ଶିକ୍ଷକ ଶ୍ରୀ ହରେକୃଷ୍ଣ ପ୍ରଧାନ, ସାହିତ୍ୟାଚାର୍ଯ୍ୟ, ଡକ୍ଟର ନବୀନ କୁମାର ସାହୁ, ଏମ. ଏ., ପି. ଏଚ. ଡି. ତାପଙ୍ଗର ବିଖ୍ୟାତ ବୈଦ୍ୟ ଶ୍ରୀ ଚିନ୍ତାମଣି ପାତାଳସିଂହ, ଶ୍ରୀ ରାଧାଶ୍ୟାମ ରାଉତରାୟ, ଦଳବେହେରା ଓ ମୋର ପୂଜ୍ୟ ପିତୃଦେବ ଶ୍ରୀ ଅଭିରାମ ପାଇକରାୟ ପ୍ରମୁଖ ପ୍ରଧାନ । ଏମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ପରିଶେଷରେ, ସଂକଳକ ହିସାବରେ ଗ୍ରନ୍ଥ ପଞ୍ଜିରେ ଥିବା ପୁସ୍ତିକା ଓ ପତ୍ରିକାରୁ ବହୁ ଅଂଶ ସଂଗ୍ରହ କରି ମୋ ପ୍ରବନ୍ଧର କଳେବର ପୁଷ୍ଟ କରିଛି । ସେହି ଗ୍ରନ୍ଥକାରଗଣଙ୍କ ନିକଟରେ ଋଣୀ ।

ସର୍ବୋପରି, ଅଧ୍ୟାପକ ଶ୍ରୀ ଅବନୀ କୁମାର ବରାଳଙ୍କ ଅକୃତ୍ରିମ ପରାମର୍ଶ ବିନା ଏହା ସମ୍ଭବ ହୋଇ ନଥାନ୍ତା । ତେଣୁ ତାଙ୍କୁ ଧନ୍ୟବାଦ ଦେବାପାଇଁ ଭାଷା ପାଉନାହିଁ ।

ସୁଧୀ ପାଠକବୃନ୍ଦ ମୋର ଏହି କ୍ଷୁଦ୍ରାବୟବ ସନ୍ଦର୍ଭରୁ, ଓଡ଼ିଶାର ସେହି ଗୌରବୋଜ୍ଜ୍ୱଳ ଅଧ୍ୟାୟରୁ ଯଦି କିଞ୍ଚିତ ଜାଣିପାରନ୍ତି, ତେବେ ମୋର ଶ୍ରମ ସାର୍ଥକ ମଣିବି । ପରିଶେଷରେ ସମସ୍ତଙ୍କୁ ଧନ୍ୟବାଦ । ଇତି ।

କଟକ
ବିଜୟାଦଶମୀ
୧୯୭୫

— ଲକ୍ଷ୍ମୀନାରାୟଣ ରାୟସିଂହ

# ପ୍ରାକ୍-କଥନୀ

୧୮୫୭ ଖ୍ରୀଷ୍ଟାବ୍ଦର ସିପାହୀ ବିଦ୍ରୋହକୁ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି ଐତିହାସିକମାନେ ସ୍ଥିର କରିଛନ୍ତି । କିନ୍ତୁ ତାର ବହୁ ବର୍ଷ ପୂର୍ବରୁ ୧୮୧୭ ଠାରୁ ଦୀର୍ଘ ୧୪ ବର୍ଷଧରି ଦୁର୍ଦ୍ଧର୍ଷ ବ୍ରିଟିଶ ଶାସନ ବିରୁଦ୍ଧରେ ଯେଉଁ ସଂଗ୍ରାମ ଏହି ଭାରତ ଭୂଇଁରେ ସଂଘଟିତ ହୋଇଥିଲା, ତାହା ଏପର୍ଯ୍ୟନ୍ତ ଐତିହାସିକ ଗୁରୁତ୍ୱ ଲାଭ କରିନାହିଁ । ସେଥିପାଇଁ ଯେଉଁ ଗବେଷଣା ଆବଶ୍ୟକ ତାହା ହୋଇନାହିଁ । କିନ୍ତୁ ଏହି ଦୀର୍ଘଦିନର ବିଦ୍ରୋହକୁ ଏକ ଗଣବିପ୍ଳବ କହିବାର ତାତ୍ପର୍ଯ୍ୟ ହେଉଛି—ଏହା ଜାତି-ଧର୍ମ-ନିର୍ବିଶେଷରେ ସଂଘଟିତ ହୋଇଥିଲା । ରାଜା ଥିଲେ ମଧ୍ୟ ତାଙ୍କର ନେତୃତ୍ୱ ଏ କ୍ଷେତ୍ରରେ କାର୍ଯ୍ୟକାରୀ ହୋଇନଥିଲା ଯଦିଓ ଆଜିର ଦୃଷ୍ଟିରେ ଏହି ବିପ୍ଳବର ଚରିତ୍ର ସାମନ୍ତବାଦୀ ଥିଲା, କିନ୍ତୁ ପ୍ରକୃତ ପକ୍ଷେ ଜନତାର ଅର୍ଥନୈତିକ ବିପର୍ଯ୍ୟୟ ହିଁ ଏପରି ଏକ ସଂଗ୍ରାମ ପାଇଁ ପ୍ରେରଣା ଦେଇଥିଲା ।

ଯେଉଁ ସମୟରେ ଏହି ବିଦ୍ରୋହ ହୋଇଥିଲା ସେତେବେଳେ ଦେଶରେ କୌଣସି ମତବାଦ ବା ଦଳର ପ୍ରାଧାନ୍ୟ ନଥିଲା –କେବଳ ଥିଲା ସାମାଜିକ ଜାତିର ପ୍ରଭେଦ ତଥା ଧର୍ମୀୟ ପ୍ରଭେଦ । ଏହି ପ୍ରଭେଦ ବିପ୍ଳବ ଆଗରେ ମ୍ଳାନ ହୋଇ ଯାଇଥିଲା । ଲୋକେ ସାମାଜିକ ଜାତି ଓ ଧର୍ମମତ ନିର୍ବିଶେଷରେ ଏହି ବିପ୍ଳବରେ ଅଂଶ ଗ୍ରହଣ କରିଥିଲେ ଏବଂ ବ୍ରିଟିଶ ଶକ୍ତିକୁ ଅତିଷ୍ଠ କରିଦେଇଥିଲେ । ଫଳରେ ସମଗ୍ର ଭାରତବର୍ଷରେ ବ୍ରିଟିଶ୍ ଶକ୍ତି ଖୋରଧା ପାଇକ ବିଦ୍ରୋହ ପରି ବିଦ୍ରୋହର ଧକ୍କାରେ ବିଚଳିତ ହୋଇ ଉଠିଥିଲା । ଏପରି ପ୍ରଚଣ୍ଡ ପ୍ରତିରୋଧ ସେ ଅନ୍ୟ କେଉଁଠାରୁ ପାଇ ନଥିଲେ ।

ବହୁବର୍ଷ ଧରି ଓଡ଼ିଶା ଥିଲା ସ୍ୱାଧୀନ । ସ୍ୱାଧୀନତାର ସ୍ୱାଦ ଓଡ଼ିଶାବାସୀ ପାଇଥିଲେ । ଭାରତର ବହୁ ସମ୍ରାଟଙ୍କ ରାଜତ୍ୱ ବେଳେ ମଧ୍ୟ ଓଡ଼ିଶା ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିଥିଲା । ଓଡ଼ିଆ ରାଜାମାନେ ରାଜ୍ୟ ବିସ୍ତାର କରିଥିଲେ । ଶିଳ୍ପ ସ୍ଥାପତ୍ୟରେ ଓଡ଼ିଶା ମଧ୍ୟ ନାମିକା ଥିଲା ।

ମୁସଲମାନମାନେ ୧୨୦୬ ମସିହାରୁ ଦିଲ୍ଲୀରେ ରାଜଧାନୀ ସ୍ଥାପନ କରି ୧୫୨୬ ମସିହା ଭିତରେ ପ୍ରାୟ ସମଗ୍ର ଭାରତ ଅଧିକାର କରିଥିଲେ । କିନ୍ତୁ ଓଡ଼ିଶା ୧୫୬୮ ରେ ସେମାନଙ୍କର କବଳଗତ ହୋଇଥିଲା । ତଥାପି ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶ ତୁଳନାରେ କେତେକ ସ୍ୱାତନ୍ତ୍ର୍ୟ ଉପଭୋଗ କରୁଥିଲା ।

ମୋଗଲ ଶାସନ ପରେ ଭାରତରେ ୧୭୫୭ ରେ ଇଂରେଜ ଶାସନ ଆରମ୍ଭ ହେଲା । ସେମାନଙ୍କୁ ସମଗ୍ର ଭାରତ ଦଖଲରେ ନେବାକୁ ଦୀର୍ଘ ପଚାଶ ବର୍ଷ ଲାଗିଥିଲା । ଏହି ସମୟ ମଧ୍ୟରେ କେବଳ ପଞ୍ଜାବ ବାଦ ପଡ଼ିଥିଲା । କିନ୍ତୁ ୧୮୦୩ ମସିହା ବେଳକୁ ଓଡ଼ିଶା ଇଂରେଜଙ୍କ ହାତକୁ ଆସିବାର ଉପକ୍ରମ ହୋଇ ମଧ୍ୟ ୧୮୧୮ ମସିହା ପର୍ଯ୍ୟନ୍ତ ସେମାନଙ୍କ ଶାସନ ସୁରୁଖୁରୁରେ ଚାଲି ପାରି ନଥିଲା ।

ଲଢ଼େଇ ବିଭିନ୍ନ ରୂପରେ ଲାଗି ରହିଥିଲା ଏବଂ ଏହି ଲଢ଼େଇରେ ଓଡ଼ିଶାର ଜନତା ବିଶେଷ କରି କୃଷକମାନେ ଅଂଶ ଗ୍ରହଣ କରିଥିଲେ । ଏହି ଶ୍ରେଣୀ ହିଁ ଥିଲେ ସେତେବେଳେ ଓଡ଼ିଶାର ପ୍ରଧାନ ସଂଗ୍ରାମୀ ଜନତା — କୃଷକ ସେନା ।

ବ୍ରିଟିଶ ଶାସନର ପୁରାପୁରି ଅଧୀନ ହେବା ପୂର୍ବରୁ ଓଡ଼ିଶାରେ ଅର୍ଥନୈତିକ ଅବସ୍ଥା କିପରି ଥିଲା, ତାହା ନିମ୍ନ ସୂଚନାରୁ ସମ୍ୟକ ଧାରଣା କରିହେବ ଏବଂ ତାହାର ବିପର୍ଯ୍ୟୟରୁ ଏପରି ଏକ ବିଦ୍ରୋହ ସମ୍ଭବ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଐତିହାସିକ ଟେପ୍ଲିନଙ୍କ 'A sketch of the History of Orissa' ଗ୍ରନ୍ଥରୁ ଜଣାଯାଏ ଯେ ସେତେବେଳେ ଧାନ ଟଙ୍କାକୁ କୋଡ଼ିଏ ୯୦ ସେର ହୋଇଥିଲା ଏବଂ ଓଡ଼ିଶାର ପ୍ରଧାନ ଉତ୍ପାଦିତ ଫସଲ ଧାନ, ବିହାର ଓ ବଙ୍ଗଳାକୁ ରପ୍ତାନୀ ହେଉଥିଲା । ଚାଷୀମାନେ ଜମିମାଲିକଙ୍କୁ

'ଜମିର ନଗୁଡ଼ି ବାଦ ଦେଇ ଆୟର ଅର୍ଦ୍ଧେକ କର ସ୍ୱରୂପ ଦେଉଥିଲେ ଏବଂ ସେମାନଙ୍କର ଜମିମାଲିକ ଗୃଷୀ ଜଣଆରେ ସେହି ଜମିର ଜଳସେଚନ ଇତ୍ୟାଦି କାର୍ଯ୍ୟରେ ଲଗାଉଥିଲେ । ସର୍ବପ୍ରଥମ ମୋଗଲ ବାଦଶାହା ଆକବରଙ୍କ ଅମଳରେ ତୋଡ଼ରମଲ୍ଲଙ୍କ ଉଦ୍ୟମରେ ଯେଉଁ ଜମି ସର୍ଭେ କରାଯାଇ ଜମାଧାର୍ଯ୍ୟ ହୋଇଥିଲା, ତାହା ପୁଣି ପରବର୍ତ୍ତୀ ଶାସକମାନେ ଅନ୍ୟ ବର୍ଷମାନଙ୍କରେ କାର୍ଯ୍ୟକାରୀ କରିନଥିଲେ । ଏପରି କି ଇଷ୍ଟଇଣ୍ଡିଆ କମ୍ପାନୀ ଲୋକମାନଙ୍କର ଓଡ଼ିଶା ଦଖଲର ଅନେକ ବର୍ଷ ପର୍ଯ୍ୟନ୍ତ ମଧ୍ୟ ଗୃଷ ଜମି ସମ୍ପର୍କରେ କିଛି ଧାରଣା ନଥିଲା । ସେମାନେ ପରେ ମରହଟ୍ଟା ମାନଙ୍କର ନିୟମ ଅନୁଯାୟୀ ଜମି ବ୍ୟବସ୍ଥା ଗ୍ରହଣ କଲେ ।

୧୮୦୩-୧୮୦୪ ରେ ଇଷ୍ଟଇଣ୍ଡିଆ କମ୍ପାନୀ ମାତ୍ର ୧୨ ଲକ୍ଷ ଟଙ୍କା ଖଜଣା ଦାବୀ କରିଥିଲେ । ଯେଉଁ ଅର୍ଥ କି ମୋଗଲ ଓ ମରହଟ୍ଟା ଅମଳ ଠାରୁ ଯଥେଷ୍ଟ କମ ଥିଲା । କିନ୍ତୁ ପରେ ସେମାନେ ବଙ୍ଗାଳୀ କର୍ମଗୃରୀଙ୍କ ସାହାଯ୍ୟରେ ଗୃଳକ ହୋଇ ଯେଉଁ ଅବସ୍ଥା ସୃଷ୍ଟି କଲେ ତାହା ନିମ୍ନ ପଂକ୍ତିରୁ ଜଣାଯିବ । Mr Ewer ଲେଖିଛନ୍ତି · the indigent miserable and depressed condition of the bulk of the agricultural population occasioned chiefly by the constant fluctuation of the government assessment.(୧) ପରେ ପରେ କମ୍ପାନୀ ସରକାର ଏହି ଅର୍ଥକୁ ବଢ଼ାଇ ୧୪୩୫୩୫୪ ଟଙ୍କା ୧୮୦୫-୬ ରେ ହୋଇଥିବା ସେଟଲମେଣ୍ଟରେ ଧାର୍ଯ୍ୟ କଲେ ।

ଲୁଣମରା, ସମୁଦ୍ର କୂଳଆ ଅଧିବାସୀମାନଙ୍କର ଏକ ପ୍ରଧାନ ବ୍ୟବସାୟ ଥିଲା । ନିଜ ଖର୍ଚ୍ଚ ଏବଂ ରାଜ୍ୟର ବଜାର ଗୃହିଦା ପୂରଣ କରି ମରହଟ୍ଟା ଅମଳରେ ବହୁତ ଲୁଣ ବାହାର ପ୍ରଦେଶକୁ ଯାଉଥିଲା । ଅର୍ଥ ସିଧା ସ୍ଥାନୀୟ ପ୍ରୋପ୍ରାଇଟରମାନଙ୍କ ହାତକୁ ଆସୁଥିଲା । କିନ୍ତୁ ୧୮୦୪ ରେ ଏକ ଅସ୍ଥାୟୀ ଆଇନ ବଳରେ ତାହା ରହିତ ହେଲା । ମରହଟ୍ଟା ଅମଳରେ ଲୁଣ ମହଣକର ଦାମ ଟ ୦।୷ ଥିଲା । ୧୮୦୪ ରେ ସରକାରୀ

(୧) The Board of Revenue office, Cuttack Letter of Mr. Ewer to Mr. Trower, Collector of Zilla Cuttack in Letter dated 15 th. Feb. 1918.

ଆଦେଶ ବଳରେ ତାହା ବାରଗୁଣ ହୋଇଗଲା । ଏହି ବ୍ୟବସ୍ଥାସ୍ଥ ବ୍ରିଟିଶ କମ୍ପାନୀ ଏକଚୃଟିଆ କରି ଓଡ଼ିଶା ଭିତରୁ ୩ ଲକ୍ଷ ଶିକାଟଙ୍କା ପାଇଲେ ଏବଂ ବାହାରକୁ ନେଇ ୧୫ ଲକ୍ଷ ଟଙ୍କା ପାଇଲେ । ଫଳରେ ଲୁଣମରା ଅଧିବାସୀଙ୍କ ମଧ୍ୟରେ ବିପର୍ଯ୍ୟୟ ଦେଖାଦେଲା । ଓଡ଼ିଶାରୁ ବାହାରକୁ ପ୍ରାୟ ୫୦,୦୦୦ ମହଣ ଲୁଣ ପଠାଯାଉଥିଲା ।

ଓଡ଼ିଶାରେ ସେତେବେଳେ ପ୍ରଚୁର ପରିମାଣରେ ଲୁଗା ବାହାରକୁ ଯାଉଥିଲା । ଏହି ଲୁଗାରୁ କମ୍ପାନୀ ଶାସନର ପ୍ରଥମ ୧୦ ବର୍ଷର ହିସାବ ଦେଖିଲେ ଜଣାଯାଏ, ସେମାନେ କି ବିପୁଳ ଅର୍ଥର ଅଧିକାରୀ ହେଉଥିଲେ !

| ରପ୍ତାନୀ | ଲୁଗାର ପରିମାଣ | ଶିକାଟଙ୍କାରେ ମୂଲ୍ୟ |
|---|---|---|
| ୧୮୦୬-୦୭ | ୨୫୧୨୧ | ୧୬୨୫୧ |
| ୧୮୦୭-୦୮ | ୩୩୬୫୭ | ୧୭୮୦୦ |
| ୧୮୦୮-୦୯ | ୫୧୬୧୧ | ୨୭୦୧୭ |
| ୧୮୦୯-୧୦ | ୪୪୩୧୩ | ୨୮୨୧୯ |
| ୧୮୧୦-୧୧ | ୯୮୪୬୦ | ୭୬୮୧୨ |
| ୧୮୧୧-୧୨ | ୧୨୧୩୧୮ | ୮୧୮୧୫ |
| ୧୮୧୨-୧୩ | ୮୧୪୨୧ | ୭୧୬୧୮ |
| ୧୮୧୩-୧୪ | ୮୧୪୫୨ | ୮୩୫୬୨ |
| ୧୮୧୪-୧୫ | ୮୩୧୮୬ | ୮୯୩୮୧ |
| ୧୮୧୫-୧୬ | ୯୮୩୩୭ | ୧୦୭୯୦୦ |
| ୧୮୧୬-୧୭ | ୧୦୬୭୮୩ | ୯୬୨୮୮ |

ଏହି ଶିଳ୍ପ ତିଷ୍ଠି ପାରିଲା ନାହିଁ । କାରଣ ଲଙ୍କାଶାୟାର ଲୁଗା ଓଡ଼ିଶାରୁ ବାହାରକୁ ଯାଉଥିବା ଲୁଗାବଜାର ଦଖଲ କରି ବସିଲା ଏବଂ କିଛିକାଳ ଏହି ଶିଳ୍ପ ଓଡ଼ିଶାରେ ତିଷ୍ଠିବାକୁ ଚେଷ୍ଟା କରି ରହିପାରିଲା ନାହିଁ । ଫଳରେ ତନ୍ତୀ ଓ କୃଷକଙ୍କ ଅର୍ଥନୈତିକ ଅବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼ିଲା । (୧)

(୧) Extract from the Letter of Mr. Becher.

ସେତେବେଳେ ବ୍ୟବସାୟ ବଳଦିଆ ବେପାରୀଙ୍କ ଦ୍ୱାରା ଚାଲୁଥିଲା । କଟକରୁ ବାଲେଶ୍ୱର ଯିବାପାଇଁ ଶଗଡ଼ ଭଡ଼ା ଥିଲା ଟ୫୯ (୧)

ଦିନ ମଜୁରି ପୁରୁଷ ମୂଲିଆ ଦିନକୁ ଟ୦/୧୦ ପାହି, ସ୍ତ୍ରୀ ଶ୍ରମିକ ଏବଂ ବାଳକ ଟ ୦/, ପାଲିଙ୍କି ବାହକ ମାସକୁ ଟ ୨୫, ୧୮୧୪ ରେ କଟକରେ ଦିନକୁ ବଳଦ ଶଗଡ଼ର ଭଡ଼ା ଥିଲା ଟ୦ । (୨) ପରେ ପରେ ଅନ୍ୟାନ୍ୟ ଯାନବାହନ ପ୍ରଚଳନର ଏବଂ ନାନା ବିଦେଶୀ ଦ୍ରବ୍ୟର ଆମଦାନି ଫଳରେ ଓଡ଼ିଶାର ଅର୍ଥନୀତି ସବୁଦିଗରୁ ବିପର୍ଯ୍ୟସ୍ତ ହୋଇପଡ଼ିଲା ଏବଂ ଓଡ଼ିଶା କେବଳ ମୁଖ୍ୟତଃ ଧାନ ଫସଲ ଆମଦାନିର କେନ୍ଦ୍ର ହୋଇ ରହିଲା ।

"ସ୍ୱାଧୀନତା ଲୋପ ପାଇବା ସଙ୍ଗେ ସଙ୍ଗେ ବିଶାଳ କୃଷକ ବାହିନୀ ଭିଜ କୃଷକରେ ପରିଣତ ହୋଇଗଲେ । ବାହିନୀତ୍ୱ ଲୋପ ପାଇଲା । ଏହି କୃଷକ ସେନା ଓଡ଼ିଶାର ସର୍ବସ୍ୱ ଥିଲେ । କିନ୍ତୁ ଓଡ଼ିଶାର ରାଜବଂଶ ଶେଷକୁ କେବଳ ଖୋରଧାରେ ରହିଥିବାରୁ, କୃଷକ ସେନାଙ୍କ ଶକ୍ତି ମଧ୍ୟ ସେହିଠାରେ ହିଁ ରହିଥିଲା । ରାଜା ଅପାରଗ ହୋଇ ପଡ଼ିବା ଯୋଗୁ କୃଷକ ସେନା, ନିଜ ମଧ୍ୟରୁ ସେନାପତି ବାହାର କରି, ତାଙ୍କ ନେତୃତ୍ୱରେ ସ୍ୱାଧୀନତା ଯୁଦ୍ଧ ଚଳାଇଥିଲେ । ତେଣୁ ଇଂରେଜ ଖୋରଧା ଅଧିକାର କଲାପରେ ଏହି କୃଷକ ସେନାକୁ ସଂପୂର୍ଣ୍ଣ ଭାବେ ଧ୍ୱଂସ କରିବା କାର୍ଯ୍ୟରେ ଲାଗିଲେ । ସେତେବେଳେ ସେମାନଙ୍କ ନାମ ଥିଲା ପାଇକ ।" (୩)

କୃଷକ ବାହିନୀର ଧ୍ୱଂସ ସାଧନ କିପରି ସୁଚିନ୍ତିତ ବିଧିବଦ୍ଧ ଓ ପୂର୍ବରୁ ପରିକଳ୍ପିତ ପ୍ରଣାଳୀରେ ହୋଇଥିଲା, ତାହା ୧୮୧୮ ମସିହାର କମିଶନର ଇଉଏର (Ewer) ସାହେବଙ୍କ ବିବରଣୀରୁ ଜଣାଯାଏ । ସେ ଲେଖିଛନ୍ତି —

"ଖୋରଧାରେ ଆଉ ପାଇକମାନଙ୍କ ସାହାଯ୍ୟ ଦରକାର ହେଉ ନାହିଁ । ସୈନ୍ୟ ବିଭାଗରେ ସେମାନଙ୍କୁ ରଖିବା ବିପଦଜନକ, ଅତଏବ

(୧) Toynbee – A. S. O. History of Orissa P. 93.
(୨) Toynbee.
(୩) ଓଡ଼ିଶାର ସାମରିକ ଶକ୍ତି – ପଣ୍ଡିତ ଗୋଦାବରୀଶ ମିଶ୍ର । ମାତୃଭୂମି ୧୯୫୨ ପୂ: ସଂ:

ତାଙ୍କୁ ସାଧାରଣ ରୟତଙ୍କ ସ୍ତରକୁ ପେଲି ଦେଇ, ତାଙ୍କଠାରୁ ଖଜଣା ଅସୁଲ କରିବା ଦରକାର । ପାଇକମାନଙ୍କୁ ପୂର୍ବର ଜାଗିର ଜମି ଦିଆଯିବା ଉଚିତ ନୁହେଁ । ଏହି ଅଳ୍ପ ସମୟ ମଧ୍ୟରେ ପାଇକ ନାମ ଲୋପ ପାଇ ଆସିଲାଣି । କିନ୍ତୁ ଏବେ ମଧ୍ୟ, ଯେଉଁଠାରେ ପାଇକ ଅଛନ୍ତି, ପୂର୍ବର ଦୁର୍ଦ୍ଦାନ୍ତ ସ୍ୱଭାବ ଆଦୌ ଛାଡ଼ି ନାହାନ୍ତି । ସେମାନଙ୍କ ବିଷଦାନ୍ତ ଭାଙ୍ଗିବା ପାଇଁ ପୋଲିସ କର୍ମଚାରୀଙ୍କୁ ଅନେକକାଳ ସେମାନଙ୍କୁ ଜବତରେ ରଖିବାକୁ ପଡ଼ିବ । ପାଇକ କୁଳକୁ ସମୂଳେ ଧ୍ୱଂସ ନ କଲେ ମଙ୍ଗଳ ନାହିଁ । × × × ପାଇକମାନେ ଏବେ ଛିନ୍ନଛିନ୍ନ ହୋଇଗଲେଣି । ସେମାନେ ଜଣେ ଜଣେ ଖଣ୍ଡାୟତ ଅଧୀନରେ ଥିଲେ । ଯୁଦ୍ଧରେ ଅନେକ ଖଣ୍ଡାୟତ ମରିପାଇଛନ୍ତି । ଆଉ କେତେକ ଖୋରଧା ଛାଡ଼ି ପଳାଇଛନ୍ତି । ଅନେକଙ୍କୁ ଜେଲ ଦଣ୍ଡ ଦିଆଯାଇଛି । ସେମାନେ ବଞ୍ଚି ଜେଲରୁ ମୁକ୍ତ ହେବେ ନାହିଁ । ତେବେ ପାଇକମାନେ ନେତା ପାଇବେ କେଉଁଠାରୁ ? ନେତା ନ ପାଇ ସେମାନେ ଗଛରୁ ଝଡ଼ିବା ପତ୍ରପରି କିଏ କେଉଁ ଆଡ଼େ ଉଡ଼ିଯିବେ । ଭବିଷ୍ୟତକୁ ଆଉ କୃଷକ ସେନା ବିପତ୍ତି ରହିବ ନାହିଁ ।”

ବ୍ରିଟିଶମାନଙ୍କ ପକ୍ଷରେ ଭୟଙ୍କର ଏହି ବାହିନୀର ପ୍ରଚଣ୍ଡତା ସେମାନେ ଏଭଳି ଭାବେ ଅନୁଭବ କରିଥିଲେ ଯେ ତାଙ୍କ ପକ୍ଷରେ ଏହି କୃଷକ ବାହିନୀର ସତ୍ତା ରଖିବା ଭବିଷ୍ୟତରେ ସେଇମାନଙ୍କ ପ୍ରତି ବିରାଟ ବିପଦ ହୋଇ ଠିଆ ହେବ ବୋଲି ସେମାନେ ଭଲଭାବେ ଜାଣିଥିଲେ । ତେଣୁ କ୍ରମେ ନାନା କୂଟ କୌଶଳରେ ଗତ ଦେଢ଼ଶ ବର୍ଷ ଧରି ସେମାନଙ୍କର ଧ୍ୱଂସ ସାଧନ କରିଦେଲେ । ଫଳରେ କାଳକ୍ରମେ ଶତ୍ରୁ ବିରୁଦ୍ଧରେ ବ୍ୟବହୃତ ଶାଣିତ ତରବାରି ପୂଜାଘରର ସାମଗ୍ରୀ ହେଲା, ବୀର ପାଇକର ଯୋଦ୍ଧା ପଣିଆ “ପାଇକ ଆଖଡ଼ା”ରେ ସୀମାବଦ୍ଧ ହୋଇଗଲା । ପାଇକମାନେ ଦରିଦ୍ର କାଙ୍ଗାଳ ହୋଇ ବିଦେଶକୁ କୁଲି ମୂଲିଆ ଭାବରେ ମାଟିକାଟି ପେଟ ପୋଷିବାକୁ ଗଲେ । ଭୋକଉପାସରେ, ରୋଗ ବଇରାଗରେ ତିଳ ତିଳ କରି ପେଷି ହେଲେ ।

ବ୍ରିଟିଶ ଅମଳରେ ଭାରତର ଅନ୍ୟାନ୍ୟ ପ୍ରଦେଶରୁ ସୈନ୍ୟ ବାହିନୀରେ ଲୋକ ନିଯୁକ୍ତ ହେଲାବେଳେ ମଧ୍ୟ ଏହି ପାଇକ ବାହିନୀକୁ ସେ ସୁଯୋଗରୁ ବଞ୍ଚିତ କରି କେବଳ ରଖା ଗଲାନାହିଁ, ସେମାନେ ବିପଦଜନକ ବୋଲି ସଂପୂର୍ଣ୍ଣ ଏଡ଼ାଇ ଦିଆଗଲା । ସେତେବେଳେ ଆଧୁନିକ

ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ବ୍ରିଟିଶ ବାହିନୀ ତଥା ଆମର ଦେଶର ବିଶ୍ୱାସ-ଘାତକ କେତେକ ନିମକହାରାମଙ୍କ ସାହାଯ୍ୟରେ ବିଦ୍ରୋହ ଦମନ ହେବା ପରେ ଯେଉଁମାନଙ୍କର ବିଚାର ହୋଇ ଫାସି, କଳାପାଣି, ଆଜୀବନ କାରାବାସ ଦଣ୍ଡରେ ଦଣ୍ଡିତ କରାଗଲା, ବର୍ତ୍ତମାନ ସରକାରୀ ନଥିପତ୍ରରୁ ମିଳୁଥିବା ସେହି ବୀରମାନଙ୍କର ନାମ ତାଲିକାରୁ (ଯାହାକି ଏହି ପୁସ୍ତକରେ ଅଛି) ଜଣାଯାଏ ଯେ ସେହି ବିପ୍ଳବରେ କେବଳ ଖଣ୍ଡାୟତ-ମାନେ ଯୋଗ ଦେଇ ନଥିଲେ—ପ୍ରତ୍ୟେକ ଜାତିର ଓ ସଂପ୍ରଦାୟର ଲୋକ ଅଂଶ ଗ୍ରହଣ କରିଥିଲେ । ତେଣୁ ଏହା ଗଣ-ବିପ୍ଳବ ଓ ଭାରତର ପ୍ରଥମ ଗଣ-ବିପ୍ଳବ ନାମରେ ନାମିତ ହେବା ହିଁ ସମୀଚୀନ ।



# ଖୋରଧା ପାଇକ ଜାଗରଣ

ଓଡ଼ିଆମାନେ ଯେ ବୀର ଜାତି ଥିଲେ ଏବଂ ନିଜର ଦେଶରକ୍ଷା ପାଇଁ ଯୁଦ୍ଧ କରୁଥିଲେ ତାହାର କ୍ଷୀଣ ଆଭାଷ ବର୍ତ୍ତମାନ ବିଦ୍ୟମାନ ଅଛି । ଏବେ ଏହି ଶ୍ରେଣୀସ୍ଥ ଲୋକମାନେ ସେମାନଙ୍କ ନାମ ଶେଷରେ ଯେଉଁ ସଂଜ୍ଞା ବ୍ୟବହାର କରନ୍ତି ତାହା ସେମାନେ ବଂଶାନୁକ୍ରମେ ବ୍ୟବହାର କରି ଆସୁଅଛନ୍ତି । ସେହି ପଦବୀଗୁଡ଼ିକ ସେମାନଙ୍କ ପୂର୍ବ ବଂଶଧର ମାନଙ୍କର ବୀରତ୍ୱର ପରିଚୟସୂଚକ । ଆପଣା ଗୁଣ ଓ କର୍ମ ଅନୁସାରେ ରାଜାମାନେ ଏହିସବୁ ଉପାଧି ପ୍ରଦାନ କରିଥିଲେ । "କର୍ପୂର ଯାଇ ବର୍ତ୍ତମାନ କେବଳ କନା"—ଏହି ସଂଜ୍ଞା ଗୁଡ଼ିକ ମାତ୍ର ସମ୍ବଳ ହୋଇ ରହିଛି । ବ୍ରିଟିଶ ରାଜୁତିର ସାର୍ଦ୍ଧ ଦେଢ଼ଶ ବର୍ଷର ଶାସନ କାଳରେ ଏହିପରି ଏକ ଦୁର୍ଦ୍ଧର୍ଷ ସ୍ୱାଧୀନଚେତା ଓଡ଼ିଆ ଜାତିକୁ ସେ ଠିକ୍ ଠଉରାଇ ନେଇ ତା'ର ଶାସନ କାଳ ମଧ୍ୟରେ ଅନ୍ୟାନ୍ୟ ପ୍ରଦେଶର ଲୋକମାନଙ୍କପରି ଏମାନଙ୍କୁ କୌଣସି ସୁଯୋଗ ସୁବିଧା ଦେଇ ନ ଥିଲେ ।

ପୂର୍ବେ ଓଡ୍ରମାନେ ପଦାତିକ ସୈନ୍ୟ ଥିଲେ । ଗଙ୍ଗ ବଂଶର ରାଜତ୍ୱ କାଳରେ ଓଡ୍ରମାନେ ସେମାନଙ୍କ ସୈନ୍ୟ ଶ୍ରେଣୀଭୁକ୍ତ ଥିଲେ ଏବଂ ସୈନ୍ୟମାନଙ୍କ ନାମାନୁସାରେ ମୁସଲମାନମାନେ ଏ ଦେଶକୁ 'ଓଡ଼ିଶା' ନାମ ଦେଲେ । ଗଙ୍ଗ ଓ ସୂର୍ଯ୍ୟବଂଶର ରାଜୁତି ସମୟରେ ଏହି ଓଡ୍ରମାନେ ଓଡ଼ିଶାର ନାନା ସ୍ଥାନରେ ବସତି କରି ଜାଏଗିର ପାଇ ରହିଲେ । ପରେ

ଖୋର୍ଧାରେ ଭୋଇବଂଶର ରାଜୁତି କାଳରେ ସେମାନେ ଅଧିକ ସଂଖ୍ୟାରେ ଏହି ଅଞ୍ଚଳରେ ରହିଲେ । ସେମାନଙ୍କ ବସତି ଯୋଗେ ବହୁଦିନ ଧରି ଖୋର୍ଧାକୁ ଲୋକେ 'ଓଡ଼ିଶା' ବୋଲି କହୁଥିଲେ । ଉତ୍କଳର ଅନ୍ୟମାନେ ମଧ୍ୟ ଓଡ୍ରମାନଙ୍କ ସଙ୍ଗେ ମିଶି ପଦାତିକ ସୈନ୍ୟ ଥିଲେ । କ୍ରମେ ଏମାନେ ପାଇକ ନାମରେ ପରିଚିତ ହେଲେ । ପାଇକ ପ୍ରଭୃତି ସୈନିକ ଶ୍ରେଣୀସ୍ଥ ଲୋକମାନେ ଖଣ୍ଡାକୁ ସନ୍ତକରୂପେ ବ୍ୟବହାର କରନ୍ତି । ପୂର୍ବେ ଦସ୍ତଖତ କରି ନ ଜାଣୁଥିବା ଲୋକ ତାର ସନ୍ତକକୁ ଦଲିଲ ମାନଙ୍କରେ ଲେଖୁଥିଲେ । ଏହିପରି ଭାବେ ଏମାନେ ଖଣ୍ଡାୟତ ରୂପେ ପରିଚିତ ହେଲେ । ଓଡ଼ିଶାରେ ପ୍ରଚଳିତ ସଂଜ୍ଞା ଗୁଡ଼ିକରୁ ସେମାନଙ୍କ ପୂର୍ବ ଗୌରବ ଜଣାଯାଏ । ନିମ୍ନ ଉଦାହରଣରୁ ତତ୍କାଳୀନ ସଂଜ୍ଞାଗୁଡ଼ିକର ପରିଚୟ ଓ ଗୁରୁତ୍ୱ ଜାଣି ହେବ ।

ରାଉତ, ରାଉତରାୟ, ମାହୁନ୍ତ, ସିଂହ, ବାଘ, ବଳିଆରସିଂହ, ଝମ୍ପଟସିଂହ, କୋଦମାସିଂହ, ବାହୁବଳେନ୍ଦ୍ର, ପାଇକରାୟ, ଭୁଜବଳ, ରଣସିଂହ, ପାହାଡ଼ାସିଂହ, ଦକ୍ଷିଣ କବାଟ, ମହାରଥୀ, ପଶ୍ଚିମ କବାଟ, ସେନାପତି, ବାହିନୀପତି, ମହାପାତ୍ର, ନାୟକ, ପଞ୍ଚନାୟକ, ଚମ୍ପତିସିଂହ, ଗଡ଼ନାୟକ, ମାନସିଂହ, ଶତ୍ରୁଶଲ, କହଲସିଂହ, ରାୟସିଂହ, ମାନଧାତା, ପାଲଟାସିଂହ, ବୀରବର, ରାଟସିଂହ, ଅରିଶଲ, ଆଗଡ଼ାସିଂହ, ଇନ୍ଦ୍ରଜିତ ସିଂହ, ଉଠାଣ ସିଂହ, ଉତ୍ତର କବାଟ, ଉଦଣ୍ଡରାୟ, ଉଦୟସିଂହ, ଖଣ୍ଡାଇତରାୟ, ଗଜେନ୍ଦ୍ର, ଚମୂପତିରାୟ, ଚମୂପତିସିଂହ, ଚହଟରାୟ, ଛକଣରାୟ, ଜୁଆଳସିଂହ, ଜ୍ୟେଷ୍ଠରାୟ, ଜଗଦେବ, ଜୟସିଂହ, ଜୁଝାରସିଂହ, ଜେନା, ଦଳସିଂହରାୟ, ଧପଟସିଂହ, ନରେନ୍ଦ୍ର, ନିଶଙ୍କ, ପାଟଶାଣୀ, ପାତ୍ର ପଟ୍ଟରାୟ (ପଟ୍ଟଡ଼ା) ଡଆଁବାଘ, ବାଘସିଂହ, ପ୍ରତାପସିଂହ, ବଧାର, ବୀରେନ୍ଦ୍ରସିଂହ, ବୈରୀଗଞ୍ଜନ, ଭାରମଲ୍ଲ, ଭୂଇଆଁ, ଭ୍ରମରବରରାୟ, ମଙ୍ଗରାଜ, ମଲ୍ଲି, ମଲ୍ଲିକ, ମତ୍ତଗଜସିଂହ, ରଣବଜୁଲି, ରଣବୀର, ରାୟ ପିତାମହ, ଶ୍ରୀଚନ୍ଦନ, ସାମନ୍ତ, ସାମନ୍ତ ସିଂହାର, ସାମନ୍ତରାୟ ସାହାସମଲ୍ଲ, ସୁନ୍ଦରରାୟ, ସଂଗ୍ରାମ ସିଂହ, ହରିଚନ୍ଦନ, ବଳରାୟ (ବରାଳ) ଇତ୍ୟାଦି ।

ଏହି ସଂଜ୍ଞାଧାରୀ ପୂର୍ବଜଗଣ ଏ ଦେଶର ସ୍ୱାଧୀନତା ରକ୍ଷା କରିଥିଲେ । ତାହା କେବଳ ବର୍ତ୍ତମାନ ଇତିହାସର ବିଷୟବସ୍ତୁ ମାତ୍ର ।

ଭାରତବର୍ଷର ଗୋଟିଏ ପ୍ରାନ୍ତରେ ୧୮୧୭ ରେ ଯେଉଁ ବିଦ୍ରୋହ ଖୋର୍ଦ୍ଧାରେ ସଂଘଟିତ ହୋଇଥିଲା, ତାହା ଅନ୍ୟ ରୂପରେ ଠିକ ଶହେ ବର୍ଷ ପରେ ସେହି ବ୍ରିଟିଶ ବିରୁଦ୍ଧରେ ସଂଘଠିତ ହେଲା । ପାଇକ ବିଦ୍ରୋହର ବିଦ୍ରୋହୀ ବୀର ବ୍ରିଟିଶ ସହିତ ଅସହଯୋଗ କରି ତାକୁ ହଟାଇବା ପାଇଁ ଯେଉଁ ଆହ୍ୱାନ ଦେଇ ଥିଲେ ତାହା କାର୍ଯ୍ୟକାରୀ ହୋଇ ନପାରି ଥିଲେ ମଧ୍ୟ ସମଗ୍ର ଦେଶରେ ଯେଉଁ ଜାଗରଣ ସୃଷ୍ଟି କରିଥିଲା, ତାହା ଇତିହାସରେ ଏକ ଗୌରବମୟ ଅଧ୍ୟାୟ ।

ସେହି ଖୋରଧା ପାଇକ ବିଦ୍ରୋହ ସଂପର୍କରେ ଲେଖିବାକୁ ଗଲାବେଳେ, ଏହି ବିଦ୍ରୋହ ବେଳକୁ ଓଡ଼ିଶା, ବିଶେଷ କରି ଖୋରଧାର ରାଜନୈତିକ ତଥା ସାମାଜିକ ପରିସ୍ଥିତିକୁ ପ୍ରଥମେ ସମ୍ମୁଖରେ ରଖିବାକୁ ହେବ ।

ବ୍ରିଟିଶମାନେ ଓଡ଼ିଶା ଦଖଲ କଲାବେଳକୁ ସମସ୍ତ ବଙ୍ଗ ପ୍ରଦେଶ ସେମାନଙ୍କର ହସ୍ତଗତ ହୋଇ ସାରିଥିଲା । ଦକ୍ଷିଣରେ 'ଦକ୍ଷିଣ ସରକାର'ର ଓଡ଼ିଆ ଜିଲ୍ଲା ଗଞ୍ଜାମ ମଧ୍ୟ ସେମାନଙ୍କର ଅଧୀନରେ ଥିଲା । ତେଣୁ ଓଡ଼ିଶା ଦଖଲ କରିବାକୁ ସେମାନଙ୍କୁ ଉଭୟ ପକ୍ଷରୁ ସୁବିଧା ମିଳିଲା ଏବଂ ଇଂରେଜମାନେ ଓଡ଼ିଶାକୁ ତିନିଦିଗରୁ ଆକ୍ରମଣ କରିଥିଲେ । ମାନ୍ଦ୍ରାଜରୁ ପ୍ରାୟ ୩୦୦୦ ସୈନ୍ୟ ୧୮୦୩ ମସିହା ୮ ତାରିଖ ସେପ୍ଟେମ୍ବରରେ ବାହାରି ମାଣିକପାଟଣା ବାଟ ଦେଇ ୧୭ ତାରିଖରେ ପୁରୀରେ ପହଞ୍ଚିଲେ । ସେତେବେଳେ ମରହଟ୍ଟାଙ୍କ ତରଫରୁ ସେ ଅଞ୍ଚଳରେ ଜଗୁଆଳି ନିଯୁକ୍ତ ଥିଲେ ମାଲୁଦର ଫତେ ମହମ୍ମଦ । ତାଙ୍କର ବିଶେଷ ସାହାଯ୍ୟ ପାଇ ସେନାପତି କର୍ଣ୍ଣେଲ ହାରକୋର୍ଟ (Colonel Harcourt) ଚିଲିକା ମୁହାଣ ପାରିହୋଇ ଦୁଇଦିନ ପରେ ନରସିଂହ ପାଟଣାରେ ପହଞ୍ଚିଲେ । ସେଠାରେ ମଧ୍ୟ ସେ କୌଣସି ପ୍ରକାର ପ୍ରତିରୋଧର ସମ୍ମୁଖୀନ ହୋଇ ନଥିଲେ । ପୁରୀ ଅଧିକାର ବେଳେ ମଧ୍ୟ ସେମାନେ ବିଶେଷ ପ୍ରତିରୋଧ ପାଇ ନଥିଲେ ଏବଂ ବିଖ୍ୟାତ ଜଗନ୍ନାଥ ମନ୍ଦିରକୁ ମଧ୍ୟ ଇଂରେଜମାନେ ଦଖଲ କରି କେତେକ ହିନ୍ଦୁ ସିପାହୀଙ୍କ ଦାୟିତ୍ୱରେ ଛାଡ଼ିଦେଇ କର୍ଣ୍ଣେଲ ହାରକୋର୍ଟ କଟକ ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ଅଠରନଳା ପାଖରେ ମରହଟ୍ଟାମାନଙ୍କର ସାମାନ୍ୟ ପ୍ରତିରୋଧ ଇଂରେଜଙ୍କର ଅଗ୍ରଗତିରେ ବିଶେଷ ବାଧା ଦାନ କରି ନଥିଲା । ମରହଟ୍ଟାମାନେ

ଅଠରନଳା ପାଖରୁ ପଳାଇଯାଇ ବାଣ୍ଡମୁକୁନ୍ଦପୁର ଠାରେ ଲୁଚି ରହିଲେ । ଇଂରେଜ ସୈନ୍ୟମାନେ ଜଗନ୍ନାଥ ସଡ଼କ ବାଟେ ଚାଲି ଚାଲି ଅତି କଷ୍ଟରେ ମରହଟ୍ଟାମାନଙ୍କ ଲୁଚିଛପା ଆକ୍ରମଣକୁ ପ୍ରତିହତ କରି କଟକ ଆଡ଼କୁ ଅଗ୍ରଗତି କଲେ । ପିପିଲି ଠାରେ ମରହଟ୍ଟାମାନେ ସଂପୂର୍ଣ୍ଣ ରୂପେ ନିରୁପାୟ ହୋଇ ଖୋର୍ଦ୍ଧାର ଜଙ୍ଗଲ ଅଞ୍ଚଳକୁ ପଳାଇ ଆସିଲେ ।

ତା'ପରେ ହାରକୋର୍ଟ (Colonel Harcourt) ପିପିଲି ଠାରୁ ବାରଙ୍ଗଗଡ଼ ବାଟ ଦେଇ ଅକ୍ଟୋବର ୮ ତାରିଖ ଦିନ କାଠଯୋଡ଼ି ପାର ହୋଇ କଟକରେ ପହଞ୍ଚିଲେ । କଟକର ବାରବାଟୀ ଦୁର୍ଗ, କଟକରେ ପହଞ୍ଚିବାର ୬ ଦିନ ପରେ ତାଙ୍କ ଦ୍ୱାରା ଅଧିକୃତ ହେଲା ।

ଇଂରେଜମାନଙ୍କର ଯୋଜନାବଦ୍ଧ ଅଭିଯାନ ଯୋଗୁ ବଙ୍ଗଳାରୁ କାପଟେନ ମୋରଗାନ୍‌ଙ୍କ ନେତୃତ୍ୱରେ ୫୦୦ ସିପାହି, ୨୧ ଜଣ ବନ୍ଧୁକଧାରୀ ଓ ୪ ଟା ଛ'ପାଉଣ୍ଡିଆ ତୋପ ସାଙ୍ଗରେ ନେଇ ତିନୋଟି ଜାହାଜରେ ଆସି ବାଲେଶ୍ୱର ସମୁଦ୍ରକୂଳବର୍ତ୍ତୀ ଗବଗାଁ ନିକଟବର୍ତ୍ତୀ ଜାମପଡ଼ା (Jampada) ରେ ଓହ୍ଲାଇଲେ । ତାପରେ ସେମାନେ ମରହଟ୍ଟାମାନଙ୍କ ଦୁର୍ଗ ଅଧିକାର କରିନେଲେ । ଇଂରେଜମାନେ ସେପ୍ଟେମ୍ବର ୨୧ ତାରିଖ ଦିନ ବାଲେଶ୍ୱର ଦଖଲ କରିଗଲେ ।

ତା ପରେ ଅନ୍ୟ ଦଳେ ଇଂରେଜ ସୈନ୍ୟ ମେଦିନାପୁର ବାଟେ ଆସି ଜଳେଶ୍ୱର ଦେଇ ବାଲେଶ୍ୱରରେ ବିନା ବାଧାରେ ପହଞ୍ଚି ବାଲେଶ୍ୱରରେ ଥିବା ଇଂରେଜଙ୍କ ସହ ମିଶିଲେ । ଏହି ଦଳ କର୍ଣ୍ଣେଲ ଫର୍ଗୁସନ (Colonel Fergusson) ଙ୍କ ନେତୃତ୍ୱରେ ଆସିଥିଲେ । ଏମାନେ ବାଲେଶ୍ୱରରୁ ବାହାରି କଟକରେ କର୍ଣ୍ଣେଲ ହାରକୋର୍ଟଙ୍କ ସହିତ ମିଶି ବାରବାଟୀ ଦୁର୍ଗ ଦଖଲରେ ହାରକୋର୍ଟଙ୍କୁ ସାହାଯ୍ୟ କଲେ ।

ଓଡ଼ିଶାକୁ ଏତେ ସହଜରେ ଦଖଲ କରି ନେବାର ଆଶା ବ୍ରିଟିଶ ମାନେ କରି ନଥିଲେ । ପୂର୍ବ ମରହଟ୍ଟା ସରକାରର ନାନାପ୍ରକାର ଅତ୍ୟାଚାର ସହି ଓଡ଼ିଶାବାସୀ ଯେଉଁ ଅଶାନ୍ତିରେ ଚଳୁଥିଲେ ସେଥିପାଇଁ ଇଂରେଜମାନଙ୍କୁ ଅନେକ ସ୍ଥଳରେ ମରହଟ୍ଟାଙ୍କ ପରିବର୍ତ୍ତେ ସାହାଯ୍ୟ ଦେଇଥିଲେ ବୋଲି ଟୋ୍ୟଲସନ ଲେଖିଛନ୍ତି ।

କିନ୍ତୁ ପରେ ପରେ ଖୋରଧାର ରାଜ ବିଦ୍ରୋହ ଏବଂ ପାଇକ ବିଦ୍ରୋହ—ଏହି ସାହାଯ୍ୟର ସତ୍ୟତା ଅପ୍ରମାଣ କରିଦେଲା । ସାଧାରଣ ଭାବେ ଖୋରଧା ତଥା ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରଜାଏ ଯେ ବ୍ରିଟିଶ ମାନଙ୍କ ବିରୁଦ୍ଧରେ ଥିଲେ ତାହା ପରବର୍ତ୍ତୀ ଘଟଣାବଳୀ ପ୍ରମାଣ କଲା ।

ଓଡ଼ିଶା ଦଖଲ ପରେ ଲେଫଟେନାଣ୍ଟ କର୍ଣ୍ଣେଲ ହାରକୋର୍ଟ ଏବଂ ମିଃ ଜେ. ମେଲଭିଲ ( J.Melville ) ଓଡ଼ିଶା ସୁବାର କମିସନର ନିଯୁକ୍ତ ହୋଇ ପ୍ରଥମେ ମୟୂରଭଞ୍ଜକୁ ଛାଡ଼ି ଅନ୍ୟାନ୍ୟ ଗଡ଼ଜାତ ରଜା ଓ ଜମିଦାର୍‌ମାନଙ୍କ ଠାରୁ ଚୁକ୍ତିପତ୍ର ସ୍ୱାକ୍ଷର କରିନେଲେ । ପ୍ରଥମ ଚୁକ୍ତିପତ୍ର ୧୮୦୩ ନଭେମ୍ବର ୨୨ ତାରିଖରେ କନିକା ରଜାଙ୍କ ସହିତ ସମ୍ପର୍ଣ୍ଣ ହେଲା ।

ଚୁକ୍ତିରେ ସର୍ତ୍ତ ରହିଲା ଯେ—

(୧) ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ଆନୁଗତ୍ୟ ସ୍ୱୀକାର ।

(୨) ରାଜା ୮୪,୮୪୦ କାହାଣ କଉଡ଼ି କମ୍ପା ୨୧୨୪୦ ଟଙ୍କା ୩ ଟି କିସ୍ତିରେ ପ୍ରଦାନ ।

(୩) କମ୍ପାନୀଙ୍କ କ୍ଷମତାକୁ ନିକଟସ୍ଥ କୌଣସି ରାଜା ଅମାନ୍ୟ କଲେ ନିଜର ସୈନ୍ୟ ବାହିନୀର ବ୍ୟବହାର ।

ଏହାପରେ ଚୁକ୍ତି ମଧ୍ୟ ନିମ୍ନଲିଖିତ ଅନ୍ୟାନ୍ୟ ୧୨ ଜଣ ମୁଖ୍ୟଙ୍କ ଠାରୁ ନିଆଗଲା । ସେମାନେ ହେଉଛନ୍ତି—

(୧) କିଲ୍ଲା ଆଠଗଡ଼—ରାଜା ଶ୍ରୀକରଣ ଗୋପିନାଥ ବେବର୍ତ୍ତା ପଟ୍ଟନାୟକ । ଦେୟ—୨୮,୧୦୧ କାହାଣ ।

(୨) କିଲ୍ଲା ନରସିଂହପୁର—ରାଜା ମାନସିଂହ ହରିଚନ୍ଦନ । ଦେୟ—୬୭୦୧ କାହାଣ ।

(୩) କିଲ୍ଲା ବଡ଼ମ୍ବା — ରାଜା ପିଣ୍ଡିକ ମଙ୍ଗରାଜ, ଦେୟ — ୭୩୪୦ କାହାଣ ।

(୪) କିଲ୍ଲା ଜୁରୁମ (Jourmoo)—ରାଜା ଗୌରୀଚରଣ ଦେବଭଞ୍ଜ । ଦେୟ—୪୫୦୦ କାହାଣ ।

(୫) କଲ୍ଲ ତାଳଚେର—ରାଜା ଭଗିରଥି ବୀରବର ହରିଚନ୍ଦନ । ଦେୟ—୬୨୧୫ କାହାଣ ।

(୬) କଲ୍ଲ ତିଗିରିଆ—ରାଜା ଚମ୍ପତିସିଂହ । ଦେୟ—୪୦୦୦କାହାଣ ।

(୭) କଲ୍ଲ ହିନ୍ଦୋଳ — ରାଜା କୃଷ୍ଣଚନ୍ଦ୍ର ମର୍ଦ୍ଧରାଜ ଜଗଦ୍ଦେବ । ଦେୟ—୨୫୦୦ କାହାଣ।

(୮) କଲ୍ଲ ଖଣ୍ଡପଡ଼ା—ରାଜା ଭ୍ରମରବର ରାୟ । ଦେୟ—୨୪୧୦୦ କାହାଣ ।

(୯) କଲ୍ଲ ଢେଙ୍କାନାଳ—ରାଜା ରାମଚନ୍ଦ୍ର ମହେନ୍ଦ୍ର ବାହାଦୂର । ଦେୟ—୨୩୧୭୫ କାହାଣ ।

(୧୦) କଲ୍ଲ ରଣପୁର—ରାଜା ବଜ୍ରଧର ନରେନ୍ଦ୍ର । ଦେୟ—୬୦୦୦ କାହାଣ ।

(୧୧) କଲ୍ଲ ନୟାଗଡ଼—ରାଜା ମାନଧାତା । ଦେୟ—୨୬୪୫୦ କାହାଣ

(୧୨) କଲ୍ଲ ଆଳଗିରି—ରାଜା ରାମଚନ୍ଦ୍ର ମର୍ଦ୍ଧରାଜ ହରିଚନ୍ଦନ । ଦେୟ—୨୩୪୦୦ କାହାଣ ।

ସେହିଦିନ ଇଷ୍ଟଇଣ୍ଡିଆ କମ୍ପାନୀ ମଧ୍ୟ ସେମାନଙ୍କୁ ଏକ 'କବୁଲ-ନାମା' ଲେଖିଦେଲେ ଯେ ଦେୟ ଛଡ଼ା ସେମାନଙ୍କ ଉପରେ ଅନ୍ୟ କୌଣସି ଦାବୀ ନାହିଁ । ଏହି ଘଟଣାର ବର୍ଷକ ପରେ କେନ୍ଦୁଝର ରାଜା ଭଞ୍ଜଙ୍କ ସହିତ ଡିସେମ୍ବର ୧୬, ୧୮୦୪ ରେ ଏକ ଚୁକ୍ତି ସମ୍ପାଦନ ହେଲା । ସେ ରାଜ୍ୟର ଦେୟ ୧୨୦୦୦ କାହାଣ ଧାର୍ଯ୍ୟ ହେଲା । ଏହା ପରେ ପରେ ଅନ୍ୟାନ୍ୟ ରାଜା ଓ ଜମିଦାରମାନଙ୍କ ସହିତ ଅନୁରୂପ ଚୁକ୍ତି ସଂପାଦିତ ହେଲା । ଦଶପଲ୍ଲର ରାଜା ଗଜଘ ଚରଣ ଭଞ୍ଜଦେବଙ୍କ ସହିତ ଏକ ସ୍ୱତନ୍ତ୍ର ଚୁକ୍ତି ହେଲା । କାରଣ ବଡ଼ମୂଳ ଘାଟିର ସ୍ଥିତି ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ସେହି ବାଟେ ଛତିଶଗଡ଼ ଓ ନାଗପୁରକୁ ସଂଯୋଜକ ରାସ୍ତା ଥିଲା । ମାର୍ଚ୍ଚ ୩ ତାରିଖରେ ବଉଦ ଏବଂ ଆଠମଲ୍ଲିକ ରାଜାଙ୍କୁ 'କବୁଲନାମା' ବିନା ଦେୟରେ ଦିଆଗଲା । ମୟୂରଭଞ୍ଜର ଗାଦିପାଇଁ ନାନା ମକଦ୍ଦମା ଯୋଗୁ ସେ ସବୁର ନିଷ୍ପତ୍ତି ପରେ ମୟୂରଭଞ୍ଜ ସହିତ

ଟ ୧୦୦୧ ଦେୟ ସହ ଚକ୍ତି ସଂପର୍ଣ୍ଣ ହେଲା । ଏହା ସହିତ ଅନ୍ୟ ରାଜନୈତିକ କାରଣ ମଧ୍ୟ ଥିଲା । (୧)

୧୮୦୩ ରେ ଓଡ଼ିଶାର ବିଭିନ୍ନ ଗଡ଼ଜାତର ରାଜାମାନଙ୍କ ସହିତ ସନ୍ଧିଚୁକ୍ତି କରିସାରିବା ପରେ ଇଂରେଜ ସମଗ୍ର ଭାରତବର୍ଷ ଉପରେ ମାଲିକ ହୋଇ ଯାଇଥିଲେ । ତଥାପି ଏହି ଚୁକ୍ତିବଦ୍ଧ କେତେକ ରାଜା ଜମିଦାର ମଧ୍ୟ ଇଂରେଜ କମ୍ପାନୀ ଉପରେ ବିରକ୍ତ ବା ଅସନ୍ତୁଷ୍ଟ ଥିବାର ଜଣାଯାଏ । ବ୍ରିଟିଶମାନଙ୍କର ଶାସନଗତ କାରଣରୁ ଦୁଇଟି ରାଜନୈତିକ ବିଦ୍ରୋହର ସେମାନେ ସମ୍ମୁଖୀନ ହୋଇଛନ୍ତି । (୨) ତେଣୁ ପାଇକ ବିଦ୍ରୋହ ପାଇଁ ଯେଉଁ କାରଣ ସବୁ ମୁଖ୍ୟ ତା ମଧ୍ୟରୁ ୧୮୦୩-୪ ରାଜାଙ୍କ ବିଦ୍ରୋହକଥା ବାଦ୍ ଦେଲେ ପାଇକ ବିଦ୍ରୋହର ସଂପୂର୍ଣ୍ଣ କାରଣମାନ ଜାଣି ହେବ ନାହିଁ । ତେଣୁ ରାଜାଙ୍କ ବିଦ୍ରୋହର କାରଣ ଓ ବିଦ୍ରୋହର ରୂପରେଖ ପୂର୍ବାପର ସଂଗତି ସହିତ ଏଠାରେ ଉଲ୍ଲେଖ କଲେ ଅପ୍ରାସଂଗୀକ ହେବ ନାହିଁ ।

---

(୧) Though the British had become supreme in India after the Daulat Rao Sinde and Yesovant Rao Holkar still possessed a considerable army. The Bhonsls had become negligible but the Peshwa was still a power both moral and physical solely for the reason. Mayurbhanja, the mostpowerful state in Orissa·· having to pay Rs 1001/=(History of Orissa by J. D. Banerji P.278.)

(୨) The two notable worthy political events in the History of Puri District since it passed into our hands, together with the rest of Orissa in 1803, are the rebellion of the Maharaja of Khurda in 1804, and the rising of the Paiks or Peasent militia in 1817-18. (Statistical Account of Bengal Vol. XIX Puri ·Tri. states of Orissa by W. W. Hunter. Trubner & co., London, 1877 Edition.)

# ଖୋରଧାର ରାଜବଂଶ ଓ ଖୋରଧା ଗଡ଼

୧୫୬୮ ଉତ୍କଳର ଶେଷ ସ୍ୱାଧୀନ ଗଜପତି ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁ ପରେ ଦେଶରେ ଅରାଜକତା ସୃଷ୍ଟି ହେଲା । ଉତ୍ତର ଆଡ଼ୁ ବଙ୍ଗ ସୁଲତାନ ଓ ଦକ୍ଷିଣ ଆଡ଼ୁ ଗୋଲକୁଣ୍ଡା ସୁଲତାନଙ୍କ ପ୍ରବଳ ପରାକ୍ରାନ୍ତ ମୁସଲମାନ ବାହିନୀ ଓଡ଼ିଶାକୁ ମାଡ଼ି ଆସିଲେ । ଦୀର୍ଘ ୩୬୦ ବର୍ଷ ଧରି ଉତ୍ତରରେ ବଙ୍ଗଳା ଓ ଦକ୍ଷିଣରେ ଆନ୍ଧ୍ର ବାହିନୀକୁ ବାରମ୍ବାର ପରାସ୍ତ କରିଥିବା ଓଡ଼ିଆ ବାହିନୀର ପରାଜୟ ଓ ନିଜ ଦେଶରେ ଅନ୍ତର୍ବିବାଦର ସୁଯୋଗ ନେଇ ଇସଲାମୀ ସେନା ଉଭୟ ଆଡ଼ୁ ଉତ୍କଳ ଉପରେ ଭୀଷଣ ଦମନଲୀଳା ଚଳାଇଲେ । ଏଇ ଆଘାତରେ ଓଡ଼ିଆ ଜାତି ମ୍ରିୟମାଣ ହୋଇ ପଡ଼ିଥିବା ବେଳେ ଭୋଇବଂଶୀୟ ଜନୈକ ପ୍ରଧାନ ସେନାପତି, ଦକ୍ଷିଣରେ ବହୁ ଯୁଦ୍ଧର ବିଜେତା ଏବଂ ପ୍ରାୟ ୨୫ ବର୍ଷ କାଳ ଓଡ଼ିଶା ଶାସନର ପ୍ରଧାନ କର୍ଣ୍ଣଧାର (୧୫୩୪-୧୫୫୯) ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁଅ ରାମଚନ୍ଦ୍ରଦେବ ବାରବାଟୀ ଦୁର୍ଗର ପୁନରୁଦ୍ଧାରର ଆଶା ନ ଦେଖି କଟକ ଓ ପୁରୀର କେନ୍ଦ୍ରସ୍ଥଳ ବରୁଣେଇ ପର୍ବତର ପାଦ ଦେଶରେ ଖୋରଧା ଠାରେ ଏକ ଦୁର୍ଗ ନିର୍ମାଣ କରି (୧୫୭୨) ଚତୁର୍ଦ୍ଦିଗରେ ରାଜ୍ୟ ବିସ୍ତାର କରିବାକୁ ଲାଗିଲେ । ଏହାଙ୍କର ପିତା ଉତ୍କଳ ଗଜପତିଙ୍କର ମନ୍ତ୍ରୀ ଥିଲେ । ରାମଚନ୍ଦ୍ରଦେବ ନିଜକୁ ଉତ୍କଳର ସ୍ୱାଧୀନ ନରପତି ଭାବେ ଘୋଷଣା କରି ରାଜତ୍ୱ କଲେ ଏବଂ ତାଙ୍କ ପ୍ରତିଷ୍ଠିତ ରାଜବଂଶ ଭୋଇ ବଂଶ ନାମରେ ପରିଚିତ ହେଲା ।

ରାମଚନ୍ଦ୍ର ଦେବ ନିଜର କ୍ଷମତା ଦୃଢ଼ କରି ପ୍ରାୟ ୩ ବର୍ଷ ପରେ (୧୫୭୫ ଖ୍ରୀଷ୍ଟାବ୍ଦରେ) ପୁରୁଷୋତ୍ତମ କ୍ଷେତ୍ରକୁ ଆଫଗାନ ସୈନ୍ୟମାନଙ୍କ ହସ୍ତରୁ ଉଦ୍ଧାର ପୂର୍ବକ ସେଠାରେ ବିଶାଳ ଶ୍ରୀ ମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତିତ୍ରୟ ପୁନର୍ବାର ବିଜୟୋଲ୍ଲାସରେ ପ୍ରତିଷ୍ଠା କରିଥିଲେ । ଶ୍ରୀ ମନ୍ଦିରରେ ଜଗନ୍ନାଥ ଦେବଙ୍କ ପୁନଃ ପ୍ରତିଷ୍ଠା ଫଳରେ ଯୁଦ୍ଧକ୍ଳାନ୍ତ, ଭୀତତ୍ରସ୍ତ, ଅବସନ୍ନ ଓଡ଼ିଆ ଜାତିର ହୃଦୟରେ ପୁନର୍ବାର ନବୀନ ଉତ୍ସାହ, ନବ ଉତ୍ତେଜନା ଓ ନବ ପ୍ରାଣତା ଜାଗ୍ରତ ହେଲା । ଧର୍ମପ୍ରାଣ ହିନ୍ଦୁ ସମାଜ ବିଜୟ ଉଲ୍ଲାସରେ ମାତି ଉଠିଲା । ଏହି ମହତ କାର୍ଯ୍ୟ ଯୋଗୁଁ ଗଜପତି ରାମଚନ୍ଦ୍ର ଦେବଙ୍କ ଯଶଃ ଚତୁ-ର୍ଦ୍ଦିଗରେ ପରିବ୍ୟାପ୍ତ ହେଲା । ଜାତିର ସାହାଯ୍ୟ ଓ ସମର୍ଥନରେ ବିଶେଷ ଉତ୍ସାହିତ ହୋଇ ରାମଚନ୍ଦ୍ର ଦେବ ଅତି ଅଳ୍ପକାଳ ମଧ୍ୟରେ କାଠଯୋଡ଼ି ନଦୀଠାରୁ ଦକ୍ଷିଣରେ ମହେନ୍ଦ୍ରମାଳ ପର୍ଯ୍ୟନ୍ତ, ଉତ୍ତରରେ କେନ୍ଦୁଝର ସୀମାଠାରୁ ପଶ୍ଚିମରେ ବୌଦ୍ଧ ସୀମା ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ଅଧିକାର କରିନେଲେ । ଏହିଦିନୁ କଟକ, ବାଲେଶ୍ୱର ଓ ମେଦିନୀପୁର ଅଞ୍ଚଳ ପ୍ରଥମେ ଆଫଗାନ ଓ ପରେ ମୋଗଲ ଶାସନାଧୀନ ହୋଇ ମୋଗଲ ବନ୍ଦୀ ନାମରେ ପରିଚିତ ହେଲା ଏବଂ ଗୋଦାବରୀ ନଦୀ ଓ ଇଚ୍ଛାପୁର ମଧ୍ୟବର୍ତ୍ତୀ-ସମୁଦ୍ର କୂଳବର୍ତ୍ତୀ ଅଞ୍ଚଳ ଗୋଲକୁଣ୍ଡା ସୁଲତାନଙ୍କ ଅଧୀନସ୍ଥ ହେଲା ।

ରାମଚନ୍ଦ୍ର ଦେବଙ୍କ କ୍ଷମତା ବୃଦ୍ଧିରେ ଆତଙ୍କିତ ହୋଇ ପ୍ରଥମେ ଗୋଲକୁଣ୍ଡା ସୁଲତାନ ଖୋରଧା ରାଜ୍ୟ ଆକ୍ରମଣ କରି (୧୫୮୯) ପରାସ୍ତ ହୋଇଥିଲେ । ଏହାପରେ ଆଫଗାନ ବିଜୟୀ ପ୍ରସିଦ୍ଧ ମୋଗଲ ସେନାପତି ମାନସିଂହ ରାମଚନ୍ଦ୍ର ଦେବଙ୍କ କ୍ଷମତା ଧ୍ୱଂସ କରିବା ପାଇଁ ପିପିଲି ଠାରୁ ଖୋରଧା ରାଜ୍ୟକୁ ପ୍ରବଳ ଭାବେ ଆକ୍ରମଣ କରିଥିଲେ ୧୫୯୨) । କିନ୍ତୁ ଖୋରଧା ନିକଟରେ ମୋଗଲ ବାହିନୀ ସମ୍ପୂର୍ଣ୍ଣ ପରାସ୍ତ ହେବାରୁ ବାଦସାହା ଆକବରଙ୍କ ନିର୍ଦ୍ଦେଶରେ ମାନସିଂହ ଯୁଦ୍ଧରୁ ନିବୃତ୍ତ ହୋଇ ରାମଚନ୍ଦ୍ର ଦେବଙ୍କୁ ଖୋରଧା ରାଜା ରୂପେ ସ୍ୱୀକାର କରିଥିଲେ । ଏହା ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଘଟଣା । ଏହି ସମୟରୁ ୧୭୫୧ ରେ ମୋଗଲବନ୍ଦୀ ମରହଟ୍ଟା ଅଧିକାର ଭୁକ୍ତ ହେବା ପର୍ଯ୍ୟନ୍ତ ଖୋରଧା ରାଜ୍ୟକୁ କଟକର ମୋଗଲ ସୁବାଦାରମାନେ ଅନ୍ୟୁନ ୩୦ ଥର ଆକ୍ରମଣ

କରି ବହୁ ଦୁର୍ଗ ଓ ଗ୍ରାମ ଧ୍ୱଂସ କରିଥିଲେ ମଧ୍ୟ ଏବଂ ପ୍ରତ୍ୟେକ ଆକ୍ରମଣ ସମୟରେ ଓଡ଼ିଶାର ପ୍ରଭୁ ଶ୍ରୀ ଜଗନ୍ନାଥ ବାରମ୍ବାର ସ୍ଥାନାନ୍ତରିତ ହୋଇ-ଥିଲେ ସୁଦ୍ଧା ଖୋରଧା ରାଜ୍ୟର କ୍ଷମତା ଓ ପ୍ରତିପତ୍ତି ପ୍ରାୟ ଅକ୍ଷୁନ୍ନ ଥିଲା । ୧୫୬୮ ପୂର୍ବରୁ ଥିବା ବିଶାଳ ଉତ୍କଳ ସାମ୍ରାଜ୍ୟର ଏକ କ୍ଷୁଦ୍ର ଅଂଶର ଅଧିକାରୀ ହୋଇଥିଲେ ହେଁ ଖୋରଧାର ଭୋଇବଂଶୀୟ ରାଜାମାନେ "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି-କର୍ଣ୍ଣାଟ-କଲବର୍ଗେଶ୍ୱର ବୀରଧିବୀରବର ପ୍ରତାପୀ" ସୂର୍ଯ୍ୟବଂଶୀ ସମ୍ରାଟଙ୍କ ଦାୟାଦ ଏବଂ ହିନ୍ଦୁ ଜଗତର ଏକ ପ୍ରଧାନ ଆରାଧ୍ୟ ଦେବତା ଜଗନ୍ନାଥ ଦେବଙ୍କ ରକ୍ଷକ ହୋଇଥିବାରୁ ସମଗ୍ର ହିନ୍ଦୁ ସମାଜରେ ଜଗନ୍ନାଥଙ୍କ 'ଚଳନ୍ତି ପ୍ରତିମା', ଓ 'ଲକ୍ଷେ ରାଜାଙ୍କ ମଉଡ଼ମଣି' ରୂପେ ବିବେଚିତ ହେଉଥିଲେ । ସାରା ଭାରତରେ ମୋଗଲ ଯୁଗରେ ଧର୍ମପୀଠ ହିସାବରେ ପୁରୁଷୋତ୍ତମ କ୍ଷେତ୍ର ବା ପୁରୀର ପ୍ରାଧାନ୍ୟ ଥିଲା ଅପ୍ରତିହତ ଓ ଅଦ୍ୱିତୀୟ । ଏହି ପୀଠର ଅଧିକାରୀ ଥିବାରୁ ଖୋରଧା ରାଜାମାନେ ଗୁଣୀ ଓ ପଣ୍ଡିତ ସମାଜରେ ବିଶେଷ ଆଦୃତ ଓ ସମ୍ମାନିତ ହେଉଥିଲେ । ଖୋରଧା ରାଜାଙ୍କ ଅଙ୍କ ମେଦିନୀପୁର ଜିଲ୍ଲା ଉତ୍ତର ସୀମାରୁ ଜୟପୁର ରାଜ୍ୟର ଦକ୍ଷିଣ ସୀମା ଓ ପଶ୍ଚିମରେ ସମ୍ବଲପୁର, ରାୟଗଡ଼, ଖଡ଼ିଆଳ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବ୍ୟବହୃତ ହେଉଥିଲା । ମେଦିନୀପୁର ଜିଲ୍ଲାରେ ରାମଚନ୍ଦ୍ର ଦେବଙ୍କ ରାଜତ୍ୱର ୪୭ ଅଙ୍କରେ ଓ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ୧୧ ଅଙ୍କରେ ଲିଖିତ ଶିଳାଲିପି ଗୁଡ଼ିକ ଏବେ ମଧ୍ୟ କେସିଆଡ଼ି ଠାରେ ଦେଖାଯାଏ । ବାଲେଶ୍ୱର ଜିଲ୍ଲାର ଶ୍ରୀ ଜଙ୍ଗଠାରେ ରାମଚନ୍ଦ୍ର ଦେବଙ୍କ ୩୪ ଅଙ୍କ ଓ ୩୮ ଅଙ୍କରେ ଲିଖିତ ଦୁଇଟି ଶିଳାଲିପି ଥିଲା । ମୟୂରଭଞ୍ଜ ଜିଲାରୁ ରାମଚନ୍ଦ୍ର ଦେବଙ୍କ ୨୪ ଅଙ୍କର ଗୋଟିଏ ଶିଳାଲିପି ମିଳିଛି । ଗଞ୍ଜାମ ଓ ଜୟପୁର ଅଞ୍ଚଳରୁ ଭୋଇବଂଶୀୟ ଅଙ୍କ ଥିବା ଶହ ଶହ ତମ୍ବାପଟା ମିଳିଛି । ଅନୁସନ୍ଧାନ କଲେ ଆଉ ଶହ ଶହ ଲେଖା ମଧ୍ୟ ମିଳିପାରିବ । (୧) ଖୋରଧା ରାଜାଙ୍କ ଅଙ୍କ ଗଣନା ମୋଗଲ ଯୁଗରେ ଛିନ୍ନ ବିଚ୍ଛିନ୍ନ ଓଡ଼ିଆ ଜାତିକୁ ଏକତା ସୂତ୍ରରେ ଆବଦ୍ଧ କରିଥିଲା ।

ରାଜନୈତିକ ଦୃଷ୍ଟିରୁ ଓଡ଼ିଶା ମୋଗଲ ଶାସନାଧୀନ ହୋଇଥିଲେ ମଧ୍ୟ ଓଡ଼ିଶାର ସମାଜ, ଧର୍ମ, ସାହିତ୍ୟ ଓ ସଭ୍ୟତାକୁ ନିୟନ୍ତ୍ରଣ କରୁଥିଲେ

(୧) କେଦାରନାଥ ମହାପାତ୍ରଙ୍କ ପ୍ରବନ୍ଧ—ସମାଜ ତା ୧୧।୧୦।୫୮

ଭୋଇବଂଶୀୟ ଗଜପତି ଓ ତାଙ୍କର ପାତ୍ରମନ୍ତ୍ରୀ ଓ ରାଜଗୁରୁଗଣ । ମରହଟ୍ଟା ରାଜତ୍ୱ କାଳରେ (୧୭୫୧-୧୮୦୩) ଖୋରଧା ରାଜ୍ୟ ଅଠର ଗଡ଼ଜାତ ଉପରେ ଆଧିପତ୍ୟ ହରାଇଥିଲେ ମଧ୍ୟ ପ୍ରଭାବ ଓ ପ୍ରତିପତ୍ତି ପୂର୍ବପରି ଅକ୍ଷୁନ୍ନ ଥିଲା ।

ହିନ୍ଦୁ ରାଜାମାନଙ୍କ ସମୟରେ ଯେଉଁ ପ୍ରକାର ଶାସନ ପଦ୍ଧତିର ପ୍ରଚଳନ ଥିଲା ତାହା ମୋଗଲ ରାଜତ୍ୱ ବେଳେ ପ୍ରାୟ ସେହିପରି ରହିଥିଲା । କେବଳ କେତେକ ପଦବୀର ପରିବର୍ତ୍ତନ ମାତ୍ର ହୋଇଥିଲା । କିନ୍ତୁ ମରହଟ୍ଟା ରାଜତ୍ୱ ସମୟରେ ତାହାର ବହୁ ପରିବର୍ତ୍ତନ ହେଲା ।

"ଗଜପତି ରାଜାମାନଙ୍କର ରାଜ୍ୟ ଯେପରି ଦେଶ ଓ ସାମନ୍ତ ରାଜ୍ୟ ଏହି ଦୁଇଭାଗରେ ବିଭକ୍ତ ଥିଲା, ମୋଗଲ ରାଜତ୍ୱରେ ତୋଡ଼ରମଲ୍ଲଙ୍କ ଶାସନରେ ସେଇ ଦୁଇ ବିଭାଗ ମୋଗଲ ବନ୍ଦୀ ଓ ଗଡ଼ଜାତ ନାମରେ ଆଖ୍ୟାତ ହେଲା । ମୋଗଲବନ୍ଦୀ ମଧ୍ୟରୁ ଖୋରଧା ରାଜାଙ୍କ ନିମନ୍ତେ ସମସ୍ତ ଖୋରଧା, ରାହାଙ୍ଗ, ଚବିଶ କୁଦ୍, ସିରେଇ ଓ ଲେମ୍ବାଇ ମିଶି ୧୫୦୭ ବର୍ଗମାଇଲ ରାଜ୍ୟ ତୋଡ଼ରମଲ୍ଲ ଛାଡ଼ିଦେଇ ବାକି ମୋଗଲବନ୍ଦୀ ରାଜ୍ୟ ପୂର୍ବକାଳର ୩୧ "ଦଣ୍ଡପାଟ" ବା "ଦେଶ" ପରିବର୍ତ୍ତେ ୫ 'ସରକାର'ରେ ବିଭକ୍ତ ହୋଇଥିଲା । 'ଦେଶପତି' ବା 'ଦେଶ ପଣ୍ଡା' ସ୍ଥଳରେ ସରକାର ଶାସନକର୍ତ୍ତାଙ୍କ ନାମ 'ଫୌଜଦାର' ରହିଲା । ଶେଷ ଗଜପତି ମୁକୁନ୍ଦ ଦେବଙ୍କ ଅଧୀନରେ ଯେଉଁ ଦେଶପଣ୍ଡାମାନେ ଥିଲେ, ପ୍ରାୟ ସେହିମାନେ ହିଁ ଫୌଜଦାର ରହିଲେ । ଫୌଜଦାରମାନେ ସାଧାରଣ ଶାସନ, ସୈନ୍ୟବିଭାଗ ଏବଂ ଶାନ୍ତିରକ୍ଷା ଓ ପୁଲିସ କାର୍ଯ୍ୟ ନିମନ୍ତେ ଦାୟୀ ଥିଲେ । ପୂର୍ବେ ଯେପରି ଦେଶ କେତେଗୁଡ଼ିଏ ବିଶି ବା ଖଣ୍ଡରେ ବିଭକ୍ତ ଥିଲା, ସରକାର ଗୁଡ଼ିକ ସେହିପରି କେତେଗୁଡ଼ିଏ 'ପ୍ରଗନ୍ନା'ରେ ବିଭକ୍ତ ହେଲା । 'ବିଶି'ର 'ବିଶୟୀ' ବା ଖଣ୍ଡପତିମାନେ "ଚୌଧୁରୀ" ନାମରେ ପରିଚିତ ହେଲେ । ବିଶିର ଭୋଇମୂଳଙ୍କ ନାମ ହେଲା 'କାନୁନଗୋ ଉଇଲାୟତି' । ପ୍ରଗନ୍ନାମାନ କେତେଗୁଡ଼ିଏ ତାଲୁକରେ ବିଭକ୍ତ ହେଲା ଏବଂ ତାହା ଜଣେ ଜଣେ 'ତାଲୁକ-ଦାର'ଙ୍କ ଅଧୀନରେ ରହିଲା । ତାଲୁକ ମଧ୍ୟରେ ରହିଲା ଗ୍ରାମ । ଗ୍ରାମ ବା ଜନ-ପଦର ନାମ ରହିଲା 'ମୌଜା' ଏବଂ ଗ୍ରାମପତି ବା ପ୍ରଧାନ "ମକଦ୍ଦମ" ସଂଜ୍ଞା ପାଇଲେ । ଗ୍ରାମର ଭୋଇଙ୍କୁ

"କାନୁନ ଗୋ" କୁହାଗଲା । ପାଇକମାନେ ସାଧାରଣତଃ "କଟୁଆଳ" ନାମରେ ପରିଚିତ ହେଲେ । ମୋଟ ଉପରେ ବିଶି ଓ ଗ୍ରାମ ମଧ୍ୟରେ କେବଳ ତାଲୁକ ସୃଷ୍ଟି ଛଡ଼ା ରାଜା ତୋଡ଼ରମଲ୍ଲ ତଥା ମୋଗଲମାନେ ଶାସନର ଅନ୍ୟକୌଣସି ପରିବର୍ତ୍ତନ କରି ନଥିଲେ । ଦେଶ ଶାସନ ଆବହମାନ କାଳରୁ ଉତ୍କଳରେ ଯେଉଁ ପ୍ରଣାଳୀରେ ଚାଲୁଥିଲା, ମୋଗଲ ରାଜତ୍ୱରେ ପ୍ରାୟ ସେହିପରି ଚାଲିଲା । ବିଭାଗ ଓ କର୍ମଚାରୀମାନଙ୍କ ନାମରେ ମାତ୍ର ପରିବର୍ତ୍ତନ ହୋଇଥିଲା । (୧)

ଗଡ଼ଜାତ ଶାସନରେ ମଧ୍ୟ ବିଶେଷ କିଛି ପରିବର୍ତ୍ତନ କରାଯାଇ ନଥିଲା । ଯେଉଁ ଖଣ୍ଡାୟତମାନେ ଗୋଟିଏ ଗୋଟିଏ ଗଡ଼ର ଅଧ୍ୟକ୍ଷ ଥିଲେ, ସେମାନେ 'କିଲାଦାର' ଏବଂ ସେମାନଙ୍କର ଗଡ଼ ଓ ରାଜ୍ୟ 'କିଲ୍ଲା' ନାମରେ କଥିତ ହେଲା । ଗଡ଼ଜାତ ରାଜାମାନେ ସାମନ୍ତରାଜା ବା 'ଭୂଇଁୟା, ନାମରେ ପୂର୍ବେ କଥିତ ହେଉଥିଲେ । ମୋଗଲମାନେ ସେମାନଙ୍କୁ ଜମିଦାର ·ଆଖ୍ୟା ଦେଲେ ଏବଂ ପ୍ରଥମେ କେବଳ ଖୋରଧା, ଆଳି, ସାରଙ୍ଗଗଡ଼ ଏବଂ ଗଡ଼ଜାତ ରାଜାମାନେ ଜମିଦାର ଆଖ୍ୟା ପାଇ-ଥିଲେ ।

ଏପରି ଶାସନ ବ୍ୟବସ୍ଥା ସତ୍ତ୍ୱେ ଖୋରଧା, ଆଳି, କୁଜଙ୍ଗ, କନିକା, ମୟୂରଭଞ୍ଜ ପ୍ରଭୃତିର ରାଜଦ୍ରୋହମାନ ଘଟିଥିଲା ଏବଂ ଓଡ଼ିଶାର ଟାଇକ ଖଣ୍ଡାୟତମାନେ ମଧ୍ୟ ପୂର୍ବବର୍ତ୍ତୀ ଶାସନ ପରି ମୋଗଲ ଶାସନରେ ମୋଗଲ ସୈନ୍ୟଶ୍ରେଣୀ ଭୁକ୍ତ ରହିଥିଲେ ।

ସେତେବେଳେ ଓଡ଼ିଶାର ସୀମା ଥିଲା ଉତ୍ତରରେ ସୁବର୍ଣ୍ଣରେଖା ନଦୀ ଓ ଦକ୍ଷିଣରେ ପୁରୀ ଜିଲାର ପୂର୍ବାର୍ଦ୍ଧ ମାତ୍ର । ଗଡ଼ଜାତ ରାଜ୍ୟମାନଙ୍କୁ ଛାଡ଼ି ବାକି ଯାହା ରହିଲା ସେହି ଅଞ୍ଚଳକୁ ମରହଟ୍ଟାମାନେ ପାଞ୍ଚଟି 'ଚକଲା'ରେ ବିଭକ୍ତ କଲେ । (୧) ପିପିଲି, ୨) କଟକ (୩) ଭଦ୍ରଖ, (୪) ସୋରେ, (୫) ବାଲେଶ୍ୱର । ପ୍ରତ୍ୟେକ ଚକଲା ପ୍ରାୟ ୧୫୦ଟି ପ୍ରଗନ୍ନାରେ ବିଭକ୍ତ ଥିଲା । ଏ ପ୍ରଗନ୍ନାମାନ ୩୨ ଜଣ ମାତ୍ର 'ଆମିଲ'ଙ୍କ ଦାୟିତ୍ୱରେ ଥିଲା । ଦେଓ୍ୱାନୀ ଓ ଫୌଜଦାରୀ ସମସ୍ତ ଭାର ସେହି 'ଆମିଲ'

---

(୧) ଉତ୍କଳ ଇତିହାସ–କୃପାସିନ୍ଧୁ ।

ମାନଙ୍କ ଉପରେ ନ୍ୟସ୍ତ ଥିଲା । ଚକଲାମାନ ଜଣେ ଜଣେ ଫୌଜଦାରଙ୍କ ଶାସନରେ ଥିଲା । ସେମାନେ ସାଧାରଣ ଶାସନ ପାଇଁ ଦାୟୀ ରହୁଥିଲେ ।

× × ×

ଆମିଲମାନେ ବେତନଭୋଗୀ ନଥିଲେ । ସେମାନେ ସଂଗୃହିତ ରାଜସ୍ୱର କିଛି ଅଂଶ ପାଉଥିଲେ । ଏହାଛଡ଼ା 'ନାନ୍‌କାର' ବୋଲି ନିଷ୍କର ଜାଗିର ମଧ୍ୟ ଭୋଗ କରୁଥିଲେ । ଆମିଲମାନଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଜଣେ କାନୁନଗୋ ଥିଲେ । ସେମାନଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତ୍ୟେକ ପ୍ରଗନ୍ନାରେ କେତେ ଜଣ ଲେଖାଏଁ ଗୁମାସ୍ତା ଥିଲେ । ପ୍ରତ୍ୟେକ ପ୍ରଗନ୍ନା ରାଜସ୍ୱ ସଂକ୍ରାନ୍ତ କର୍ମଚାରୀମାନଙ୍କ ନାମାନୁସାରେ ତାଲୁକ ଚୌଧୁରୀ, ତାଲୁକ କାନୁନଗୋ, ତାଲୁକ ମକଦ୍ଦମୀ ପ୍ରଭୃତି ଭାଗରେ ବିଭକ୍ତ ଥିଲା । (୧)

ମୋଗଲ ରାଜତ୍ୱ ସମୟରେ ଯେଉଁ ଜମିଦାର ସବୁ ସୃଷ୍ଟି ହୋଇଥିଲେ ସେମାନଙ୍କ ସଂଖ୍ୟା ମରହଟ୍ଟା ରାଜତ୍ୱରେ ବଢ଼ିବାକୁ ଲାଗିଲା ଏବଂ ମୋଗଲ ରାଜତ୍ୱରେ ପ୍ରଜା ଓ ରାଜପୁରୁଷମାନଙ୍କ ମଧ୍ୟରେ ଯେଉଁମାନେ ମଧ୍ୟ-ସତ୍ତ୍ୱାଧିକାରୀ ବା ମଧ୍ୟବର୍ତ୍ତୀ କର୍ମଚାରୀ ଥିଲେ, ମରହଟ୍ଟା ଶାସନରେ ସେମାନେ ସତ୍ତ୍ୱବିହୀନ ହୋଇଥିଲେ ।

ମରହଟ୍ଟା ରାଜତ୍ୱ ସମୟରେ ଖୋରଧା ରାଜାଙ୍କଠାରୁ ମରହଟ୍ଟାମାନେ ଯୁଦ୍ଧ ବ୍ୟୟ ନିମନ୍ତେ ରହାଙ୍ଗ, ସିରେଇ, ଚବିଶକୁଦ ଏବଂ ଲେମ୍ବାଇ ପ୍ରଗନ୍ନାମାନ ଆପଣା ଅଧିକାରରେ ନେଇଥିଲେ । ସେହି ପ୍ରଗନ୍ନାମାନଙ୍କ ରାଜସ୍ୱର କେତେ ଅଂଶ ଜଗନ୍ନାଥଙ୍କ ସେବା ନିମନ୍ତେ ଖଞ୍ଜିଥିଲେ । ପୂର୍ବେ ଭୋଇବଂଶୀୟ ରାଜାମାନେ ବିଶେଷତଃ ରହାଙ୍ଗ ପ୍ରଗନ୍ନାରେ ବ୍ରାହ୍ମଣମାନଙ୍କୁ ବହୁ ଶାସନ ଦାନ କରିଥିଲେ । ମାତ୍ର ବ୍ରାହ୍ମଣମାନେ ଦାନ ଗ୍ରହଣରେ ଅସ୍ୱୀକୃତ ହେବାରୁ, ଦାନ ଜମି ନିମନ୍ତେ କର ନେବା ପାଇଁ ରାଜାଙ୍କୁ ବାଧ୍ୟ କଲେ । ଦତ୍ତ ଗ୍ରାମରୁ କର ଗ୍ରହଣ କରିବା ପାପ ମନେକରି ରାଜା ବ୍ରାହ୍ମଣଙ୍କ ଦାନ ଜମିରେ ସାମାନ୍ୟ ମାତ୍ର କର ଚିରସ୍ଥାୟୀ ଭାବରେ

---

(୧) ଓଡ଼ିଶା ଇତିହାସ—ଡଃ ମହତାବ

ଧାର୍ଯ୍ୟ କରି ସନନ୍ଦ ଦେଇ ଥିଲେ ଏବଂ ନିଜେ ତାହା ଗ୍ରହଣ ନ କରି ଜଗନ୍ନାଥଙ୍କ ସେବା ପୂଜାରେ ବ୍ୟୟ କରୁଥିଲେ । ଏହି ରାଜସ୍ୱର ନାମ "ସତାଇଶ ହଜାରୀ" ଜମା । କାରଣ ପ୍ରଥମେ ଏହା ସତେଇଶ ହଜାର ଟଙ୍କା ଥିଲା । ମରହଟ୍ଟାମାନେ ସେହି ପ୍ରଗନ୍ନାମାନ ନିଜ ଅଧିକାରରେ ନେବାରୁ ସତେଇଶ ହଜାରୀ ଜମା ଜଗନ୍ନାଥଙ୍କ ନିମନ୍ତେ ବ୍ୟୟ କରୁଥିଲେ ଏବଂ ଏହା ଉପରେ ଅଧିକ ବ୍ୟୟ ମଧ୍ୟ ରାଜକୋଷରୁ ଚଳାଉଥିଲେ । ଜଗନ୍ନାଥ ଯାତ୍ରୀଙ୍କ ଠାରୁ ମରହଟ୍ଟମାନେ ପ୍ରାୟ ୯ ଲକ୍ଷ ଟଙ୍କା ବାର୍ଷିକ ଆଦାୟ କରି ରାଜକୋଷକୁ ନେଉଥିଲେ ।

ଏସବୁ ସତ୍ତ୍ୱେ ମରହଟ୍ଟା ଶାସନ ଘୋର ବ୍ୟଭିଚାରରେ ପୂର୍ଣ୍ଣ ଥିଲା । ଚୋର, ଡକାୟତ ଦେଶରେ ପ୍ରବଳ ହୋଇଥିଲେ । ମରହଟ୍ଟା ସୈନ୍ୟମାନେ ଲୁଣ୍ଠନ ଦ୍ୱାରା ପୋଷି ହେବାକୁ ମରହଟ୍ଟାମାନେ ଛାଡ଼ିଦେଇ ଥିଲେ । ଅଳ୍ପକାଳ ମଧ୍ୟରେ ସେମାନେ ଓଡ଼ିଶାରୁ ଯେତେ ପାରୁଥିଲେ ତେତେ ଅର୍ଥ ବୋହି ନେବାରେ ଲାଗୁଥିଲେ । ଏପରିକି ଖୋରଧା ରାଜାଙ୍କ ଠାରୁ ସୁବାଦାରମାନେ ବାର୍ଷିକ ୧୩ ଲକ୍ଷ ପର୍ଯ୍ୟନ୍ତ ଟଙ୍କା ଶୋଷଣ କରୁଥିଲେ । ଅନ୍ୟାନ୍ୟ କ୍ଷୁଦ୍ର ରାଜା ଓ ଜମିଦାରମାନଙ୍କ ଠାରୁ ମଧ୍ୟ ସେହିପରି ଶୋଷଣ କରାଯାଉଥିଲା । ଫଳରେ ଓଡ଼ିଶାର ଯୁଦ୍ଧପ୍ରିୟ ପାଇକମାନେ ବେଳେ ବେଳେ ବିଦ୍ରୋହୀ ହୋଇ ରାଜସ୍ୱ ବନ୍ଦ କରି ଦେଉଥିଲେ ଏବଂ ମରହଟ୍ଟା ସୈନ୍ୟମାନେ କେତେବେଳେ ସେମାନଙ୍କୁ ପରାସ୍ତ କରି ଏବଂ କେତେବେଳେ ବା ନିଜେ ପରାସ୍ତ ହୋଇ ଅନବରତ ଯୁଦ୍ଧରେ ଲାଗିଥିଲେ ।

ରାଜସ୍ୱ ଆଦାୟକାରୀମାନେ ପ୍ରଜାମାନଙ୍କୁ ବିଶେଷ ଯନ୍ତ୍ରଣା ଦେଇ କର ଆଦାୟ କରୁଥିଲେ । ମରହଟ୍ଟା ସୈନ୍ୟମାନଙ୍କର ଅତ୍ୟାଚାର ମଧ୍ୟ ବିଶେଷ ଭୟଙ୍କର ଥିଲା । ସେମାନଙ୍କୁ 'ବର୍ଗୀ' କୁହାଯାଉଥିଲା । 'ବର୍ଗୀ' ମାନଙ୍କ ଭୟରେ ଲୋକେ ତ୍ରସ୍ତ ହେଉଥିଲେ । ସେମାନଙ୍କ ଭୟରେ ଲୋକେ ଭଲ ଖାଉ ନଥିଲେ, ଭଲ ପିନ୍ଧୁ ନ ଥିଲେ, କି ଭଲ ଘର କରି ରହୁ ନ ଥିଲେ । ବର୍ଗୀଙ୍କ ଭୟରେ ଲୋକେ ଗ୍ରାମ ଛାଡ଼ି ବନ ପର୍ବତରେ ଆଶ୍ରୟ ଖୋଜୁଥିଲେ । (୧)

---

(୧) ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ

ଦକ୍ଷିଣରେ ଇଂରେଜମାନେ ୧୭୬୦ରେ ଓଣ୍ଡିଉଆସ ଯୁଦ୍ଧରେ ଫରାସୀ ଶକ୍ତିକୁ ଧ୍ୱଂସ କରି ହାଇଦ୍ରାବାଦ ନିଜାମଙ୍କଠାରୁ ୧୭୬୫ରେ ଗୋଦାବରୀ ଓ ଚିଲିକା ମଧ୍ୟବର୍ତ୍ତୀ ଅଞ୍ଚଳ ଅଧିକାର କରିନେଲେ । ସେହି ସମୟ ଠାରୁ ଖୋରଧା ରାଜ୍ୟର ଦକ୍ଷିଣ ସୀମାରେ ଇଂରେଜ କମ୍ପାନୀ ନିଜ ଶକ୍ତି ଦୃଢ଼ୀଭୂତ କରିବା ପାଇଁ ରୁଷିକୁଲ୍ୟା ମୁହାଣ ନିକଟବର୍ତ୍ତୀ ଗଞ୍ଜାଠାରେ ଦଳେ ସୈନ୍ୟ ରଖିଲେ । ଭବିଷ୍ୟତରେ ଖୋରଧା ରାଜ୍ୟ ଦଖଲ କରିବା ଅଭିସନ୍ଧି କମ୍ପାନୀ ସରକାରଙ୍କର ରହିଲା । ତେଣୁ ୧୮୦୩ରେ ମରହଟ୍ଟାମାନେ ଦେବଗ୍ରାମ ସନ୍ଧିରେ ଇଂରେଜମାନଙ୍କୁ ଓଡ଼ିଶା (କଟକ ଓ ବାଲେଶ୍ୱର ଜିଲ୍ଲା ଓ ପୁରୀ ସଦର ସବ୍‌ଡିଭିଜନର ଅଧିକାଂଶ) ଛାଡ଼ି ଦେବା ମାତ୍ରେ କମ୍ପାନୀର ସୈନ୍ୟମାନେ ଗଞ୍ଜାମ ଆଡ଼ୁ ମାଣିକପାଟଣା ବାଟେ ପୁରୀ ଅଧିକାର କଲେ । ତାପରେ ବାଲେଶ୍ୱର ଓ ବାରବାଟୀ ଦୁର୍ଗ ଦଖଲ କଥା ପୂର୍ବେ ବର୍ଣ୍ଣିତ ହୋଇଅଛି ।

ଇଂରେଜମାନଙ୍କର ଏହି ଦଖଲ ବେଳେ ଖୋରଧା ରାଜା ମୁକୁନ୍ଦ ଦେବ ବିଚକ୍ଷଣ କୂଟନୀତିଜ୍ଞ ଇଂରେଜ କମ୍ପାନୀର ଅଭିସନ୍ଧି ବୁଝିପାରି ନ ଥିଲେ ।

ଖୋରଧା ରାଜବଂଶର ରାଜାମାନେ ପୂର୍ବରୁ ସେମାନଙ୍କର ଗୌରବ, ସ୍ୱାଧୀନ ରାଜତ୍ୱ ଓ ରାଜ୍ୟାଧିକାରରୁ ବଞ୍ଚିତ ହୋଇ ନଥିଲେ । ଇତିହାସରୁ ଜଣାଯାଏ ଯେ ରାଜା ରାମଚନ୍ଦ୍ର ଦେବ, ରାଜା ତୋଡ଼ର ମଲ୍ଲଙ୍କ ଦ୍ୱାରା ସ୍ୱାଧୀନ ରାଜା ରୂପେ ସ୍ୱୀକୃତ ହୋଇ ପରେ ପୁଣି ମାନସିଂହଙ୍କ ଦ୍ୱାରା ୧୨୯ କିଲାର ପ୍ରଭୁତ୍ୱ କରିଥିଲେ ଏବଂ ଆକବରଙ୍କ ଦରବାରରେ ଉଚ୍ଚ ସମ୍ମାନ ପାଇ ଅର୍ଦ୍ଧ ସ୍ୱାଧୀନରାଜା ରୂପେ ରାଜତ୍ୱ କରୁଥିଲେ । ଏହାପରି ଭାବେ ଭୋଇ ବଂଶର ଏକାଦଶ ରାଜା ବୀରକିଶୋର ଦେବଙ୍କ ପର୍ଯ୍ୟନ୍ତ ଖୋରଧା ରାଜାଙ୍କର ରାଜତ୍ୱ ଚାଲିଥିଲା ।

ବୀରକିଶୋର ଦେବ ରାଜା ହେବାର ଅଳ୍ପ ଦିନ ମଧ୍ୟରେ ମରହଟ୍ଟାମାନେ ଓଡ଼ିଶା ଅଧିକାର ପାଇଲେ ଏବଂ ଜଗନ୍ନାଥ ଓ ଭୋଇ ରାଜାମାନେ ଯବନର ଅତ୍ୟାଚାରରୁ ଏକପ୍ରକାର ମୁକ୍ତି ପାଇଲେ । ବୀରକିଶୋର ଦେବଙ୍କ ରାଜତ୍ୱ କାଳରେ ଖେମଣ୍ଡି ରାଜା ନାରାୟଣ ଦେବ ୧୭୬୦ ଖ୍ରୀଷ୍ଟାବ୍ଦରେ ଖୋରଧା ଆକ୍ରମଣ କରିବାରୁ ମରହଟ୍ଟା ସୁବାଦାର ଶିବଭଟ୍ଟ

ସାମନ୍ତରାୟ, ବୀରକିଶୋର ଦେବଙ୍କୁ ସାହାଯ୍ୟଦେଇ ନାଗପୁରଙ୍କୁ ଛାଡ଼ି ଦେଲେ । ମାତ୍ର ବୀରକିଶୋର ଦେବ ଶିବଭଟ୍ଟଙ୍କୁ ମରହଟ୍ଟା ସୈନ୍ୟ-ବ୍ୟୟ ଚୁକ୍ତି ଅନୁସାରେ ଦେଇ ନପାରିବାରୁ ଟଙ୍କା ଆଦାୟ ଦେବା ପର୍ଯ୍ୟନ୍ତ ରାହାଙ୍ଗ, ଚବିଶ କୁଦ, ଲେମ୍ବାଇ ଓ ସିରାଇ ପ୍ରଗନ୍ନାମାନ ମରହଟ୍ଟାମାନଙ୍କୁ ଦଖଲ ବନ୍ଧକ ସ୍ୱରୂପ ଦେଲେ ।

ବୀରକିଶୋର ଦେବ ଶେଷକାଳକୁ ପାଗଳ ହୋଇଗଲେ ଏବଂ ନିଜର ଚାରି ସନ୍ତାନଙ୍କୁ ମାରିଦେଲେ । ମରହଟ୍ଟା ସୁବାଦାର ରାଜା ରାମପଣ୍ଡିତ ତାହାଙ୍କୁ ବନ୍ଦୀ କରି ତାଙ୍କର ନାତି ଦିବ୍ୟସିଂହ ଦେବଙ୍କୁ ବାର୍ଷିକ ୧୦ ହଜାର ଟଙ୍କା କର ଦେବାର ସ୍ୱୀକାର କରାଇ ରାଜା କଲେ ଏବଂ ସେଥି ସଙ୍ଗେ ମଧ୍ୟ ବାଣପୁର, ଖୋରଧା ଓ ଲେମ୍ବାଇ ତାହାଙ୍କ ଅଧିକାରରେ ଛାଡ଼ିଦେଲେ । ପରେ ଦିବ୍ୟସିଂହ ଦେବ ଏହି ଟଙ୍କା ଦେବାକୁ ଅସ୍ୱୀକାର କରିବାରୁ ରାଜାରାମ ବଳ ପ୍ରୟୋଗ କଲେ । ବହୁଦିନ ବ୍ୟାପି ଯୁଦ୍ଧରେ ବହୁ ଅର୍ଥ ବ୍ୟୟ ଓ ସୈନ୍ୟ କ୍ଷୟ କରି ରାଜାରାମ ବିଦ୍ରୋହ ଶାନ୍ତ କଲେ ଏବଂ କର ଆଦାୟର ସୁବ୍ୟବସ୍ଥା କଲେ ।

୧୭୯୮ ଖ୍ରୀଷ୍ଟାବ୍ଦରେ ଦିବ୍ୟସିଂହ ଦେବଙ୍କ ମୃତ୍ୟୁ ହେବାରୁ ତାହାଙ୍କ ପୁତ୍ର ଦ୍ୱିତୀୟ ମୁକୁନ୍ଦଦେବ ରାଜା ହେଲେ । ମୁକୁନ୍ଦ ଦେବ ଖୋରଧାର ଶେଷ ରାଜା । ଏହାଙ୍କ ରାଜତ୍ୱର ପଞ୍ଚମ ବର୍ଷରେ ଇଂରେଜ ମାନେ ଓଡ଼ିଶା ଅଧିକାର କଲେ । (୧)

ଇଂରେଜମାନେ ୧୮୦୩ ରେ ଓଡ଼ିଶା ଅଧିକାର କଲା ବେଳକୁ ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ୱେଲସଲି ଓଡ଼ିଶାର ରାଜା ଓ ପ୍ରଜାଙ୍କ ମଧ୍ୟରେ ଯେଉଁ ଶାନ୍ତି ଶାସନ ଓ ଉଦାର ନୀତିର ଘୋଷଣା ପ୍ରଚାର କରିଥିଲେ ସେଥିରୁ ଅନ୍ତତଃ ମୁକୁନ୍ଦଦେବ ଆପଣା ବଂଶର ପୂର୍ବ ରାଜତ୍ୱ ଓ ମରହଟ୍ଟାମାନଙ୍କ ଦ୍ୱାରା ଅପହୃତ ପ୍ରଗନ୍ନାମାନ ଫେରି ପାଇବାର ଆଶା ପୋଷଣ କରିଥିଲେ । ମାତ୍ର ଇଂରେଜ ରାଜତ୍ୱ ପ୍ରତିଷ୍ଠା ପରେ ଲେଫ୍ଟନାଣ୍ଟ କର୍ଣ୍ଣେଲ ହାରକୋର୍ଟ ଏବଂ ମିଃ ଜେ. ମେଲଭିଲ (କମିଶନର ଦ୍ୱୟ) ଓଡ଼ିଶାର ଶାସନଭାର ନେବା ପରେ ସେମାନେ

(୧) ଉତ୍କଳ ଇତିହାସ—କୃପାସିନ୍ଧୁ

ପୂର୍ବରୁ ଖୋରଧା ରାଜାଙ୍କଠାରୁ ମରହଟ୍ଟାମାନେ ନେଇଥିବା ରାହାଙ୍ଗ, ସିରାଇ, ଚବିଶକୁଦ ପ୍ରଭୃତି ପ୍ରଗନ୍ନାମାନ ଫେରାଇ ଦେବାକୁ ଅସ୍ୱୀକୃତ ହେଲେ । ତେଣୁ ରାଜା ମୁକୁନ୍ଦଦେବ ନିଜର ପୂର୍ବ ରାହାଙ୍ଗ, ଚବିଶ କୁଦ, ଲେମ୍ବାଇ, ସିରେଇ ପ୍ରଭୃତି ଖାସ୍ ସରକାରି ପ୍ରଗନ୍ନାରୁ ଜୋର ଜବରଦସ୍ତ ଖଜଣା ଆଦାୟ କରିବାକୁ ଆରମ୍ଭ କଲେ । ମରହଟ୍ଟାମାନଙ୍କ ସହିତ ତାଙ୍କର ଯେଉଁ ସଂଘର୍ଷ ହେଉଥିଲା ତାହା ଇଂରେଜ ରାଜତ୍ୱ ଅମଳକୁ ଗଡ଼ି ଆସିଲା ।

ଏହି ସଂଘର୍ଷର ଅପୂମାରମ୍ଭ ହେଲା ପୁରୀ ନିକଟବର୍ତ୍ତୀ ବାଟଗାଁ ସଂପର୍କରେ । ପୂର୍ବରୁ ବାଟଗାଁ ମୋଗଲବନ୍ଦୀ ପ୍ରଗନ୍ନାରେ ଥିଲା । ଓଡ଼ିଶା ସରକାର ସେଠାରୁ ଖଜଣା ଆଦାୟ କରୁଥିଲେ । ମରହଟ୍ଟାମାନଙ୍କ ଅମଳରେ ରାଜକୋଷରେ ସେଇ ଗାଁର ଖଜଣା ଦାଖଲ ହେଉଥିଲା । ଇଂରେଜମାନେ ଓଡ଼ିଶା ଦଖଲ କରିବା ଓ ଖୋରଧା ରାଜା ଇଂରେଜ ରାଜତ୍ୱର ଆନୁଗତ୍ୟ ବିନା ବାଧାରେ ସ୍ୱୀକାର କରିବାର ଏକ ବର୍ଷ ଭିତରେ ମୋଗଲବନ୍ଦୀ ଅଞ୍ଚଳରେ ଖୋରଧା ରାଜା ସଂଘର୍ଷ ଆରମ୍ଭ କରିଦେଲେ । ବାଟଗାଁରେ ୧୦ ବର୍ଷ ହେଲା ସନନ୍ଦ ପାଇ ବାଲି ଜେନା ମକଦ୍ଦମ ଭାବରେ କାର୍ଯ୍ୟ କରୁଥିଲେ । ଖୋରଧା ରାଜା ଅଚ୍ୟୁତ ବାରିକଙ୍କୁ ପରଓ୍ୱାନା ଦେଇ ସେହି ଗ୍ରାମକୁ ମକଦ୍ଦମ ଭାବରେ ପଠାଇଲେ । ଏହା ଜାଣିପାରି ବାଲିଜେନା ପୁରୀର କଲେକ୍ଟରଙ୍କ ପାଖରେ ଆପତ୍ତି କଲେ । ପୁରୀ କଲେକ୍ଟର, 'କମିଶନର ବୋର୍ଡ଼'ଙ୍କୁ ଜଣାଇଲେ । କମିଶନର ବୋର୍ଡ଼ ୧୮୦୪ ଜୁଲାଇ ମାସ ଶେଷ ଆଡ଼କୁ ପୁରୀ କଲେକ୍ଟରଙ୍କୁ ଜଣାଇଲେ ଯେ ଖୋରଧା ରାଜାଙ୍କର ବାଟଗାଁରେ ମକଦ୍ଦମ ନିଯୁକ୍ତ ଅଧିକାର ନାହିଁ । ଅଚ୍ୟୁତ ବାରିକଙ୍କୁ ଖଜଣା ଅସୁଲ ନ କରିବାକୁ ତାଗିଦା କରାଯାଇ ଏକଥା ରାଜାଙ୍କୁ ଜଣାଇ ଦିଆଗଲା ଏବଂ ବିନା ହୁକୁମରେ ସରକାରଙ୍କ ରାଜ୍ୟରେ ଖୋରଧା ରାଜା କିମ୍ବା ତାଙ୍କର ଲୋକେ ଯେପରି କୌଣସି କ୍ଷମତା ବିସ୍ତାର ନ କରନ୍ତି ସେଥିପ୍ରତି କଡ଼ା ନଜର ରଖିବାକୁ କଲେକ୍ଟରଙ୍କୁ ହୁକୁମ ଦିଆଗଲା । ଜବରଦସ୍ତ ଅଚ୍ୟୁତ ବାରିକଙ୍କୁ ବାଟଗାଁର ମକଦ୍ଦମ ପଦରୁ ଅନ୍ତର କରିଦିଆଗଲା ।

ସେ ସମୟର ବ୍ରିଟିଶ ଶାସନର ଜମିଜମା ବନ୍ଦୋବସ୍ତ ନୀତିରୁ ଯେ ବହୁ ଉପଦ୍ରବ ଉପୁଜିଥିଲା, ଏଥିରେ ସନ୍ଦେହ ନାହିଁ । ୧୮୦୩ ରେ ବ୍ରିଟିଶ ଶାସନ ଓଡ଼ିଶାରେ ଚଳିବା ସଙ୍ଗେ ସଙ୍ଗେ ଶାସକମାନେ ଜମି ବନ୍ଦୋବସ୍ତ ପ୍ରତି ନଜର ଦେଉଥିଲେ । ମରହଟ୍ଟା ଅମଳରେ ଯେଉଁ ରୀତିରେ ଜମିଜମା ବନ୍ଦୋବସ୍ତ ହୋଇଥିଲା ତାକୁ ପୂର୍ଣ୍ଣ ଭାବରେ ଗ୍ରହଣ କରିଯିବା ପାଇଁ ବ୍ରିଟିଶ ଶାସକମାନଙ୍କ ଇଚ୍ଛା ନଥିଲା । କିଛି ନୂତନ ବ୍ୟବସ୍ଥା କରି ପରିବର୍ତ୍ତନ ଆଣିବାର ଇଚ୍ଛା ଶାସକମାନଙ୍କର ଥିଲା; କିନ୍ତୁ ଏଥିପାଇଁ ଯେଉଁ ସମୟ ଓ ଯେତେ ସଂଖ୍ୟାରେ ଯୋଗ୍ୟ କର୍ମଚାରୀ ଦରକାର ତାହା ସରକାରଙ୍କର ନଥିଲେ । ସେଥିପାଇଁ ସେମାନେ ସହଜରେ ଖଜଣା ଆଦାୟ ହେବାଭଳି ପନ୍ଥା ଉଦ୍‌ଭାବନ କରିବାକୁ ଚେଷ୍ଟା କଲେ । ୧୮୦୪ ସେପ୍‌ଟେମ୍ବର ପୂର୍ବରୁ ସରକାରୀ ମହଲରେ ବନ୍ଦୋବସ୍ତ ନୀତି ନେଇ ଆଲୋଚନା ଚାଲିଥିଲା । ସେତେବେଳେ ସରକାରୀ ଉପର ମହଲରେ ସ୍ଥିର ହେଲା ଯେ ଜମିଦାର, ମକଦ୍ଦମ, ଜାଗିରଦାର, ରାଜା ପ୍ରଭୃତି ଶ୍ରେଣୀର ମାଲିକମାନଙ୍କ ସହିତ ଅସ୍ଥାୟୀ ଭାବରେ ବନ୍ଦୋବସ୍ତ କରାଯାଉ । ବଡ଼ ଜମିଦାରୀ ଭିତରେ ଯେଉଁସବୁ ଛୋଟ ଜମିଦାର ଅଛନ୍ତି ସେମାନଙ୍କ ସହିତ ସ୍ୱତନ୍ତ୍ର ଭାବରେ ବନ୍ଦୋବସ୍ତ ବ୍ୟବସ୍ଥା କରାଯାଉ । ଯେଉଁମାନେ ଜମିର ସ୍ୱତ୍ୱର ପ୍ରକୃତ ଦଖଲକାର ଅଛନ୍ତି ସେମାନଙ୍କ ସହିତ ବନ୍ଦୋବସ୍ତ ବ୍ୟବସ୍ଥା ହେଉଥିବା ଖବର ପ୍ରଚାର ହେବା ସଙ୍ଗେ ସଙ୍ଗେ କେତେଜଣ ବଡ଼ ବଡ଼ ଜମିଦାର ଆତଙ୍କିତ ହେଲେ । ଯାହାର ପୂର୍ବରୁ ଯେଉଁ ସଂପତ୍ତି ଉପରେ ଅଧିକାର କୌଣସି କାରଣରୁ ଛୁଟିଯାଇ ଥିଲା ସେ ମଧ୍ୟ ବନ୍ଦୋବସ୍ତ ଲୋଭରେ ସ୍ୱତ୍ୱ ଦଖଲ କରିବାକୁ ଚେଷ୍ଟା କଲେ । ପୁଣି ବଡ଼ ବଡ଼ ଜମିଦାର ଓ ଜାଗିରଦାରମାନେ ସରକାରଙ୍କର ନୂତନ ବନ୍ଦୋବସ୍ତ ନୀତିରେ ସେମାନଙ୍କର ସତ୍ତ୍ୱ ଲୋପର ସୂଚନା ଦେଖିଲେ । ଖୋରଧା ରାଜାଙ୍କ ଅବସ୍ଥା ତାହାହିଁ ହୋଇଥିଲା । (୧)

ରାହାଙ୍ଗ, ଚବିଶକୁଦ, ସିରେଇ, ଲେମ୍ବେଇ—ଏହି ଚାରି ପରଗଣା ଉପରେ ସେ ଯଦି ନିଜର ମାଲିକତ୍ୱ ପ୍ରମାଣ ନ କରନ୍ତି ତାହାହେଲେ ବନ୍ଦୋବସ୍ତ ପରେ ତାଙ୍କର ଆଉ କୌଣସି ଆଶା ରହିବ ନାହିଁ," ଏହି ଆଶଙ୍କାରେ ସେ ସେହି ଅଞ୍ଚଳରୁ ଖଜଣା ଆଦାୟ କରି ମାଲିକ ସ୍ୱତ୍ୱ

(୧) ଗତଶତାବ୍ଦୀର ଓଡ଼ିଶା - ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।

ସାବ୍ୟସ୍ତ ପାଇଁ ଚେଷ୍ଟା କରୁଥିଲେ । ଯେଉଁ ଜମିଦାର ବା ଜାଗିରଦାରମାନେ ବ୍ରିଟିଶ ସରକାରଙ୍କ ଅନୁରକ୍ତ ନଥିବା ପ୍ରମାଣ ମିଳିଥିଲା, ସେମାନଙ୍କୁ ବନ୍ଦୋବସ୍ତରେ ଅସ୍ୱୀକାର କରି ସେମାନଙ୍କର ଜମିକୁ ଖାସ କରିଦେବା ନିଷ୍ପତ୍ତି ସରକାର ପୂର୍ବରୁ ଗ୍ରହଣ କରି ସାରିଥିଲେ ।

ଏହାପରେ ୧୮୦୩ ନଭେମ୍ବର ମାସ ୨୯ ତାରିଖରେ କମିଶନର ମାନେ ମୁକୁନ୍ଦ ଦେବଙ୍କୁ ଜଣାଇ ଦେଲେ ଯେ ତାଙ୍କ ଅଧୀନରେ ଥିବା ସମସ୍ତ ବର୍ଗୀ (ମରହଟ୍ଟା) ସୈନ୍ୟମାନଙ୍କୁ ଉପଯୁକ୍ତ ବରକନ୍ଦାଜ ପହରା ଦ୍ୱାରା ପଠାଇ ଦିଅ । ରାଜା ଏଥିରେ କର୍ଣ୍ଣପାତ କଲେ ନାହିଁ । ତେଣୁ ଇଂରେଜ ଶାସକଙ୍କର ରାଗ ଏହାଦ୍ୱାରା ବିଶେଷ ବୃଦ୍ଧି ପାଇଲା । ରାଜାଙ୍କ ସହିତ ନୂତନ ଚୁକ୍ତି ସଂପାଦନ କରିବାପାଇଁ ଇଂରେଜମାନେ ବ୍ୟଗ୍ର ହେଲେ ।

ଇଂରେଜ ସରକାର ଏକ ଚୁକ୍ତିପତ୍ର ଖସଡ଼ା ପ୍ରସ୍ତୁତ କରି କଟକ ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଜଣେ କର୍ମଚାରୀ ଗୋବିନ୍ଦ ରାୟଙ୍କ ହାତରେ ପଠାଇଲେ । ଏହି ଚୁକ୍ତି ପତ୍ରରେ ରାଜା ସ୍ୱାକ୍ଷର କରିବାକୁ କୌଣସି ଆଗ୍ରହ ପ୍ରକାଶ କଲେ ନାହିଁ । ଏହି ସମୟରେ କେତେକ ବିଶ୍ୱାସଘାତକ ଏବଂ ଇଂରେଜଙ୍କର ତୋଷାମଦକାରୀ, ସରକାରଙ୍କୁ ଜଣାଇଲେ ଯେ ମୁକୁନ୍ଦ ଦେବଙ୍କୁ ତାଙ୍କ ମନ୍ତ୍ରୀ ଜୟୀ ରାଜଗୁରୁ କୁ-ମନ୍ତ୍ରଣା ଦେଇ ବହୁ ପାଇକ ସର୍ଦ୍ଦାରଙ୍କ ସହ ସରକାରଙ୍କ ବିରୁଦ୍ଧରେ ମତାଉଛନ୍ତି । ତେଣୁ ଇଂରେଜ ସରକାର ୧୮୦୪ ମସିହା ଜାନୁୟାରୀ ୭ ତାରିଖରେ ମୁକୁନ୍ଦ ଦେବଙ୍କୁ ଜଣାଇ ଦେଲେ ଯେ ଯେଉଁ ଚୁକ୍ତିପତ୍ର ଗୋବିନ୍ଦ ରାୟଙ୍କ ଦ୍ୱାରା ପଠାଯାଇଛି ସେଥିରେ ଯଦି ରାଜା ସ୍ୱାକ୍ଷର ନ କରନ୍ତି ତା' ହେଲେ ତାଙ୍କୁ ଖୋରଧାରୁ ବାହାରି ଯିବାକୁ ହେବ ।

ମୁକୁନ୍ଦ ଦେବ ଏହି ତାଗିଦା ପାଇବା ପରେ ନିଜର ଦେୱାନଙ୍କ ହାତରେ କେତେକ କାଗଜପତ୍ର କମିଶନରଙ୍କ ପାଖକୁ ପଠାଇଲେ । ସେଥିରୁ କମିଶନର ଯାହା ବୁଝିଲେ ଜୟୀ ରାଜଗୁରୁଙ୍କୁ ଡକାଇ ଆଣିଲେ ସବୁ କାମ ହୋଇଯିବ ବୋଲି ସ୍ଥିର କରି ରାଜାଙ୍କୁ ଲେଖିଲେ ।

ଜୟୀ ରାଜଗୁରୁ ଆସିଲେ ତାଙ୍କ ପ୍ରତି କୌଣସି ଅସଦ୍‌ବ୍ୟବହାର ହେବ ନାହିଁ ବୋଲି କମିଶନରମାନେ ଜଣାଇବା ସଙ୍ଗେ ସଙ୍ଗେ ରାଜଗୁରୁଙ୍କୁ ମଧ୍ୟ ଜଣାଇଲେ ଯେ ସେ ଆସିଲେ ରାଜାଙ୍କ ପାରିବାରିକ ବିଷୟରେ ତାଙ୍କ ପରାମର୍ଶ ଅଧିକ ମୂଲ୍ୟବାନ ହେବ । କିନ୍ତୁ ଜୟୀ ରାଜଗୁରୁ ଇଂରେଜମାନଙ୍କ ଦୂରଭିସନ୍ଧି ବୁଝିପାରି କମିଶନରଙ୍କ ନିକଟକୁ ଗଲେ ନାହିଁ ।

ବାରବାଟୀ ଦଖଲ ପରେ ଯେଉଁ ସୈନ୍ୟଦଳ ବଡ଼ମୂଲ ଘାଟି ଆଡ଼କୁ ଅଗ୍ରସର ହେଉଥିଲେ ସେମାନଙ୍କୁ ରସଦ ଯୋଗାଇ ଅନ୍ୟାନ୍ୟ ସବୁପ୍ରକାର ସାହାଯ୍ୟ କରିବାପାଇଁ ମୁକୁନ୍ଦ ଦେବଙ୍କୁ ଇଂରେଜ ଶାସକମାନେ ୧୮୦୩ ଅକ୍ଟୋବର ୨୩ ତାରିଖରେ ଲେଖିଥିଲେ । ଏହା ପୂର୍ବରୁ ମୁକୁନ୍ଦ ଦେବଙ୍କ ସହ ଯେଉଁ ଚୁକ୍ତି ହୋଇଥିଲା ସେହି ଚୁକ୍ତି ଅନୁସାରେ ଇଂରେଜମାନେ ରହାଙ୍ଗ, ଚବିଶକୁଦ, ସିରେଇ, ଲେମ୍ବେଇର ରାଜସ୍ୱ ବାବଦକୁ ଟ୯୦,୦୦୦୲ ଦେବାକୁ ପ୍ରତିଶ୍ରୁତି ଦେଇଥିଲେ । ୧୮୦୩ ନଭେମ୍ବର ୨୩ ତାରିଖରେ କଟକ କମିଶନର ହଣ୍ଟ ମୁକୁନ୍ଦ ଦେବଙ୍କ ନିକଟକୁ ଟ ୪୦,୦୦୦୲ ପଠାଇ ଦେଇ ବାକି ଟ ୫୦,୦୦୦୲ ପରେ ପଠାଇ ଦେବା କଥା ଜଣାଇଲେ । ଏହି ଟଙ୍କା ସମ୍ପର୍କରେ କଥିତ ହୁଏ ଯେ ରାଜାଙ୍କର ବ୍ରିଟିଶ ସୈନ୍ୟମାନଙ୍କୁ ତାଙ୍କ ଅଧିକୃତ ଅଞ୍ଚଳ ବାଟ ଦେଇ ଛାଡ଼ି ଦେବାକୁ ରାଜା ଏକ ଗୁପ୍ତ ଚୁକ୍ତି କରିଥିଲେ । ଏହି ଚୁକ୍ତି ଅନୁଯାୟୀ ସେ ଏକଲକ୍ଷ ଟଙ୍କା ପାଇବାର ସ୍ଥିର ହୋଇଥିଲା । ଏହି ଟଙ୍କାର ଏକ ଅଂଶ ପଠାଇଦେବା ପରେ ମଧ୍ୟ ଅନ୍ୟ ଅଂଶତକ ପଠାଇବା ପାଇଁ ରାଜା କହିବା ପରେ ସେମାନେ ନ ଦେବାରୁ ରହାଙ୍ଗ, ସିରେଇ ପ୍ରଭୃତି ଅଞ୍ଚଳକୁ ଦାବି କରି ଖଜଣା ଅସୁଲରେ ପ୍ରବୃତ୍ତ ହେଲେ । ଏହି ଚୁକ୍ତି ପରେ ରାଜା ଖାସ ତୁରଗଣାର ୩ଟି ମୌଜାରୁ ଖଜଣା ଅସୁଲ କରିବାର ଉଦ୍ୟମ କରିଥିବାରୁ ସେତେବେଳେ ଏହା ମୈତ୍ରୀ ଭାବର ବିରୋଧ ବୋଲି କମିଶନର ରାଜାଙ୍କୁ ଜଣାଇଲେ । ତାପରେ ମରହଟ୍ଟା ସୈନ୍ୟମାନଙ୍କୁ ପଠାଇବାକୁ ରାଜାଙ୍କୁ ସରକାର ଜଣାଇ ବ୍ୟର୍ଥ ହେବା ପରେ ୧୮୦୪ ରେ ଏକ ନୂତନ ଚୁକ୍ତି ପତ୍ରରେ ସ୍ୱାକ୍ଷର କରିବା ପାଇଁ ହୁକୁମନାମା ଜାରି କଲେ । ସେହି ପୂର୍ବ ଚୁକ୍ତି ବଳରେ ସରକାରଙ୍କ ତରଫରୁ ଖୋର୍ଦ୍ଧାରେ ଜଣେ ତହସିଲଦାର ନିଯୁକ୍ତ ହୋଇଥିଲେ । ରାଜାଙ୍କର ଖୋରାକ ପୋଷାକ

ବାବଦକୁ ୪ଣ୍ଡେ ମୌଜାର ଖଜଣା ରାଜାଙ୍କୁ ଦେଇ ଦେବାପାଇଁ କମିଶନରମାନେ ଖୋରଧା ତହସିଲଦାରଙ୍କୁ ଆଦେଶ ଦେଇଥିଲେ । ସୁନିଆଁ ଓ ଆଶ୍ୱିନ ( ଦେବୀପୂଜା ) ପର୍ବରେ ରାଜା ପୁରୁଷୋତ୍ତମ କ୍ଷେତ୍ରରୁ ପ୍ରତିବର୍ଷ ୯ ଟି ସୁନା ମୋହର ଓ ଦଶଟଙ୍କା ଭେଟି ପାଉଥିଲେ । କମିଶନରମାନେ ବଡ଼ଦେଉଳର ମୋହଡ଼ାଦାର ମୋହର ପଣ୍ଡିତଙ୍କୁ, ରାଜାଙ୍କୁ ଏହି ଭେଟି ଦିଆଯିବାପାଇଁ ଆଦେଶ ଦେଇଥିଲେ । (୧)

ଏହି ସମୟରେ ପୁରୀ ମନ୍ଦିର ବ୍ରିଟିଶ ସରକାରଙ୍କ ତତ୍ତ୍ୱାବଧାନରେ ରହିଥିଲା । ସେହି ବର୍ଷ ଅର୍ଥାତ୍ ୧୮୦୪ ସେପ୍ଟେମ୍ବର ମାସରେ ରଥକାଠ ଆସିବାରେ ଅସୁବିଧା ସୃଷ୍ଟି ହୋଇଥିଲା । ନାନାପ୍ରକାର ଖର୍ଚ୍ଚର ତାଲିକା ରଥ ପରିଛା ଦେଇ ସମସ୍ତ ଖର୍ଚ୍ଚ ନ ମିଳିଲେ ରଥ କାର୍ଯ୍ୟ ହେବ ନାହିଁ ବୋଲି ଜଣାଇଥିଲେ । ଏହିପରି ଗୋଳମାଳରେ ରାଜାଙ୍କ ହାତ ଅଛି ବୋଲି ସରକାର ବୁଝିଲେ ।

ତାପରେ ମୁକୁନ୍ଦଦେବ ୧୮୦୪ ଅକ୍ଟୋବର ମାସ ପୂର୍ବରୁ କମିଶନର ମାନଙ୍କୁ ଜଣାଇ ଦେଲେ ଯେ ତାଙ୍କ ନାମରେ ପୂର୍ବରୁ ଯେଉଁ ଟ ୫୦୦୦୦୍ ଜମା ଅଛି, ଦରକାର ଥିବାରୁ ସେଥିରୁ ଟ ୩,୦୦୦୍ ତାଙ୍କୁ ଦିଆଯାଉ, କିନ୍ତୁ କମିଶନରମାନେ ଉତ୍ତର ଦେଲେ ରାଜା ଚୁକ୍ତି ଅନୁସାରେ ସଦ୍ଭାବ ରଖି ଚଳୁ ନଥିବାରୁ ସେ ଟଙ୍କା ଦିଆଯାଇ ପାରିବ ନାହିଁ । (୨)

ଏହି ଘଟଣା ପରେ କମିଶନରମାନେ ଅକ୍ଟୋବର ପହିଲାରେ ମୌଲବୀ ସାଲମ ଅଲ୍ଲି ନାମକ ଜଣେ କର୍ମଚାରୀଙ୍କୁ କାପଟେନ ବ୍ଲାଣ୍ଟ ଓ ଦୁଇଜଣ ଘୋଡ଼ା ସବାର ସୈନିକଙ୍କସହ ପଠାଇ ରାଜାଙ୍କୁ ସତ୍ପଥରେ ଚାଲିବାକୁ ପ୍ରବର୍ତ୍ତାଇ ଥିଲେ ।

ଏହି ସମୟରେ ପୁଣି କଟକ-ଖୋରଧା ରାସ୍ତାର ଡାକ ଚଳାଚଳ ରାଜା ବନ୍ଦ କରି ହଇରାଣ କରୁଛନ୍ତି ବୋଲି କମିଶନରମାନେ ଖବର ପାଇଲେ ।

---

(୧) ଉତ୍କଳ ଇତିହାସ—କୃପାସିନ୍ଧୁ
(୨) ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା – ସୂର୍ଯ୍ୟନାରାୟଣ

ଖୋରଧା ରାଜାଙ୍କର ଏହିପରି କାର୍ଯ୍ୟକଳାପ ବଢ଼ୁଥିବାରୁ ଲକ୍ଷ୍ୟ କରି ଇଂରେଜମାନେ ସିଧା ଖୋର୍ଦ୍ଧା ଦଖଲ କରିନେବା ପାଇଁ ଯୋଗାଡ଼ରେ ରହିଲେ । ଏତିକି ବେଳେ ୧୮୦୪ ଅକ୍ଟୋବର ମାସରେ ସ୍ଥାନେ ସ୍ଥାନେ ଲୋକେ ଇଂରେଜଙ୍କୁ ହଇରାଣ କଲେ । ରାଜାଙ୍କର ଦଳେ ପାଇକ ପୁରୀ ଜିଲ୍ଲାର ପିପିଲି ନିକଟରେ କେତୋଟି ଗ୍ରାମ ଲୁଣ୍ଠନ କରି ନେଲେ ଏବଂ ଅନେକ ଇଂରେଜ କର୍ମଚାରୀଙ୍କୁ ବନ୍ଦୀ କରି ରଖିଲେ ଏବଂ ବନ୍ଦୀଶାଳାର କେତେକଙ୍କୁ ହତ୍ୟା କରାଯାଇଛି ବୋଲି ସରକାର ଖବର ପାଇଲେ ।

ଇଂରେଜଙ୍କର ପୂର୍ବରୁ ସନ୍ଦେହ ହୋଇଥିଲା ଯେ ବେରାରର ମରହଟ୍ଟା ରାଜାଙ୍କ ସହିତ ମୁକୁନ୍ଦଦେବ ମେଣ୍ଟ ବାନ୍ଧି ସେମାନଙ୍କୁ ହରାଇବାର ଯୋଗାଡ଼ କରୁଥିଲେ । ତେଣୁ ଏସବୁ ପରିସ୍ଥିତି ଦୃଷ୍ଟିରୁ ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କରିବାପାଇଁ ଇଂରେଜମାନେ ଦୃଢ଼ପରିକର ହେଲେ ।

ମାସକ ମଧ୍ୟରେ ଇଂରେଜମାନେ ଖୋରଧା ଗଡ଼କୁ ଆକ୍ରମଣ କରିବା ପାଇଁ ଗଞ୍ଜାମରୁ ଦଳେ ସୈନ୍ୟ ଗୋଳା ବାରୁଦ ଧରି ଦକ୍ଷିଣ ଦିଗରୁ ଖୋରଧା ଗଡ଼ ଅଭିମୁଖରେ ଯାତ୍ରା କଲେ । ପୁରୀ ଆଡ଼ୁ ଆଉ ଦଳେ ସୈନ୍ୟ ପୂର୍ବ ଦିଗରୁ ଗଡ଼ ଆଡ଼କୁ ଯାତ୍ରା କଲେ । କଟକରୁ ଦଳେ ସୈନ୍ୟ ମହାନଦୀ କୂଳ ଦେଇ ଉମପଡ଼ା ଓ ବାଙ୍କି ପ୍ରଭୃତି ଅଞ୍ଚଳ ଭିତରେ ପଶି, ବଣ ଜଙ୍ଗଲ ପାରି ହୋଇ ଉତ୍ତର ଆଡ଼ୁ ଖୋରଧାଗଡ଼ ଆକ୍ରମଣ କରିବାକୁ ଯାତ୍ରା ଆରମ୍ଭ କଲେ । ଖୋରଧା ରାଜାଙ୍କ ପ୍ରଭାବରୁ କାଳେ ଲୋକମାନେ ତାଙ୍କୁ ରସଦ ଦେବେ ନାହିଁ, ସେଥିପାଇଁ ସେମାନେ କଟକରୁ ସମସ୍ତ ସାମଗ୍ରୀ ସାଙ୍ଗରେ ଆଣିଥିଲେ । ସେତେବେଳେ ଘୋର ବଣ ଜଙ୍ଗଲ ଥିବାରୁ ଏବଂ ରାସ୍ତାଘାଟ ଅସୁବିଧା ଥିବାରୁ ଇଂରେଜ ସୈନ୍ୟ-ମାନଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା ।

ଗଡ଼ ଅବରୋଧ କରିବାକୁ ଦକ୍ଷିଣ ଦିଗ ସୁବିଧାଜନକ ନୁହେଁ । ପୂର୍ବ, ପଶ୍ଚିମ ଓ ଉତ୍ତର ପଟର ଖୋଲା ମଇଦାନରେ ଯୁଦ୍ଧ କରିବା ସୁବିଧାଜନକ ନଥିଲା । ପୁଣି ବରାଟ ଟାଣୁଆ ଏକ ପଥର କାନ୍ଥ ଗଡ଼ ଚତୁର୍ଦ୍ଦିଗରେ ଘେରି ରହିଥିଲା । ତେଣୁ ସେମାନେ ଖୋଲା ମଇଦାନ

ଟଙ୍କେ ଥିବା ମୁକୁନ୍ଦ ପ୍ରସାଦ ଗ୍ରାମର ଟୋଟା ଭିତରେ ବଛା ବଛା ପ୍ରାୟ ୭ ହଜାର ସୈନ୍ୟଙ୍କୁ ନେଇ ଛାଉଣି ପକାଇଲେ ।

ଯେଉଁ ଲଢ଼େଇ ସେଠାରେ ହେଲା, ତାର ମୁଖ୍ୟ ନେତୃତ୍ୱ ଗ୍ରହଣ କରିଥିଲେ ଜୟୀ ରାଜଗୁରୁ । ଜୟକୃଷ୍ଣ ରାଜଗୁରୁଙ୍କର ବାସସ୍ଥାନ ହେଉଛି ପୁରୀ ନିକଟବର୍ତ୍ତୀ ବୀରହରେକୃଷ୍ଣପୁର ଶାସନ । ଭରତ ବିଖ୍ୟାତ ସ୍ମୃତିକାର ଗଦାଧର ରାଜଗୁରୁଙ୍କର ସେ ହେଉଛନ୍ତି ପୌତ୍ର ।

ମୁକୁନ୍ଦଦେବଙ୍କୁ ଯେତେବେଳେ ମାତ୍ର ୧୭, ୧୮ ବର୍ଷ ସେତିକି ବେଳେ ଯେଉଁ ସବୁ ଘଟଣା ଘଟୁଥିଲା, ତାହାର ନିୟନ୍ତ୍ରଣ କର୍ତ୍ତା ଥିଲେ ଜୟକୃଷ୍ଣ ରାଜଗୁରୁ । ଇଂରେଜମାନେ, ମୁକୁନ୍ଦ ପ୍ରସାଦ ଠାରେ ଛାଉଣି ପକାଇବା ପୂର୍ବରୁ ୧୮୦୪ ନଭେମ୍ବର ୧୯ ତାରିଖରେ ସବୁ ରାଜା, ଜମିଦାରଙ୍କୁ ମୁକୁନ୍ଦଦେବଙ୍କୁ କୌଣସି ପ୍ରକାର ସାହାଯ୍ୟ ନ କରିବାକୁ ପରୱାନା ଜାରି କରିଥିଲେ । ଘୁମୁସର ରାଜା ଧନଞ୍ଜୟ ଭଞ୍ଜଙ୍କ ଜମିଦାରୀ, ରଣପୁର, ବାଣପୁର, ନୟାଗଡ଼ ପ୍ରଭୃତି ଓଡ଼ିଶା ସରହଦକୁ ଲାଗି ରହିଥିବାରୁ ବିଦ୍ରୋହୀମାନେ ଘୁମୁସରର ବଣ ଜଙ୍ଗଲରେ ଆଶ୍ରୟ ନେଉ ଥାଆନ୍ତି । ସେଥିଯୋଗୁଁ ବିଦ୍ରୋହୀମାନଙ୍କୁ ଆଶ୍ରୟ ନ ଦେବାକୁ ସରକାର ଧନଞ୍ଜୟ ଭଞ୍ଜଙ୍କୁ ୧୮୦୪ ମସିହା ଅକ୍ଟୋବର ୧୧ ତାରିଖ ଦିନ ଅନୁରୋଧ ଜଣାଇଥାନ୍ତି ।

ଏହି ସମୟକୁ ଖୋରଧା ରାଜାଙ୍କ ଦେଶୀୟ ପାଇକ ସୈନ୍ୟ ବାହିନୀରେ ପ୍ରାୟ ୨୦ ହଜାର ସୈନ୍ୟଙ୍କ ବ୍ୟତୀତ ଆରବ ଓ ପଠାଣ ସୈନ୍ୟଙ୍କ ଭିତରୁ ବହୁ ବଛା ବଛା ସୈନ୍ୟଙ୍କୁ ରାଜା ନିଜ ସେନ୍ୟ ବାହିନୀରେ ରଖିଥିଲେ ।

ଓଡ଼ିଶାରେ ମୁସଲମାନ ଶାସନ କାଳରେ ଯେଉଁମାନେ ସୈନ୍ୟ-ବାହିନୀରେ ଥିଲେ ଏବଂ ପରେ ମରହଟ୍ଟା ଅମଳରେ ଯେଉଁ ସୈନ୍ୟମାନେ ଓଡ଼ିଶାର କରଦ ରାଜାମାନଙ୍କ ଅଧୀନରେ ଚାକିରି କରି ଘରଦ୍ୱାର କରି ରହିଗଲେ ସେହିମାନଙ୍କ ମଧ୍ୟରୁ ଖୋରଧା ଅଞ୍ଚଳରେ ଥିବା ସୈନ୍ୟମାନଙ୍କ ମଧ୍ୟରୁ ଅନେକ ପାଇକ ବାହିନୀରେ ରହିଥିଲେ ।

ଏହି ସମୟରେ ଏତେଗୁଡ଼ଏ ସୈନ୍ୟଙ୍କୁ ଦରମା ଦେଇ ରଖିବା ଅସମ୍ଭବ ଥିବାରୁ ରାଜା ଏହି ସୈନ୍ୟବାହିନୀର ଲୋକମାନଙ୍କର ଭରଣ ପୋଷଣ ପାଇଁ ଜମିବାଡ଼ି ଖଞ୍ଜି ଦେଇଥିଲେ । ଦଳବେହେରାମାନେ ସ୍ୱତନ୍ତ୍ର ଜାଗିରୀ ଜମି ଭୋଗ କରି ଆବଶ୍ୟକ ବେଳେ ମାଗଣ (୧) ଅନୁସାରେ ସୈନ୍ୟ ପଠାଉଥିଲେ ।

ଏହି ସମୟକୁ ଖୋର୍ଦ୍ଧା କେତେଗୁଡ଼ଏ ଶାସନ ବିଭାଗରେ ବିଭକ୍ତ ହୋଇଥିଲା । ସେହି ବିଭାଗକୁ କିଲ୍ଲା ଓ କିଲ୍ଲାର ମୁଖ୍ୟ ସ୍ଥାନକୁ ଗଡ଼ କୁହାଯାଉଥିଲା ।

ଖୋରଧା ନିମ୍ନଲିଖିତ ୧୦ ଟି କିଲ୍ଲାରେ ବିଭକ୍ତ ଥିଲା—

(୧) ଖୋରଧା, (୨) ଦାଣ୍ଡିମାଳ, (୩) ଚାପଙ୍ଗ, (୪) କୁଶପଲ୍ଲୀ, (୫) କୁହୁଡ଼ି, (୬) ହଳଦିଆ, (୭) ବଳଭଦ୍ରପୁର, (୮) ମାଣିକା ଗୋଡ଼ା ବା ମାଣିକ୍ୟଗଡ଼, (୯) ବାଣପୁର, (୧୦) ମୋଗଲବନ୍ଦୀ (Mughal Bandi) (୨)

ଏହି କିଲ୍ଲାଗୁଡ଼ିକ ଅଧୀନରେ ଯେତେଗୁଡ଼ଏ ମୌଜା ଥିଲା, ସେଥିମଧ୍ୟରେ ଗଡ଼ ଶବ୍ଦ ଥାଇ ବହୁତଗୁଡ଼ଏ ଗ୍ରାମ ଥିଲା । ଏ ସମସ୍ତରେ ଯେଉଁ ଦଳବେହେରା ଥିଲେ ତାଙ୍କର ଦାୟିତ୍ୱରେ ସୈନ୍ୟ ପ୍ରେରିତ ହେଉଥିଲେ ।

ସୈନ୍ୟ ବାହିନୀରେ କେବଳ ଯେ ଖଣ୍ଡାୟତ ଜାତିର ଲୋକ ଥିଲେ ତା ନୁହେ । ସୈନ୍ୟ ବାହିନୀରେ ସବୁ ଜାତିର ଲୋକ ଥିଲେ ଏବଂ ସେମାନଙ୍କ କାର୍ଯ୍ୟ ଓ ବୀରତ୍ୱ ପାଇଁ ବିଭିନ୍ନ ପଦବୀରେ ଭୂଷିତ ହେଉ-ଥିଲେ, କିନ୍ତୁ ଖଣ୍ଡାୟତ ଜାତିର ଲୋକ ଅଧିକ ପରିମାଣରେ ଏହି ବାହିନୀରେ ଯୋଗ ଦେଇଥିଲେ ।

---

(୧) ମାଗଣ—ନିଜ ଖର୍ଚ୍ଚ

(୨) Statistical Account of Bengal Vol. XIX Puri. Tribut. State of Orissa Page–183.

ଏହି ସମୟରେ ଏକ ସୁନ୍ଦର ଶାସନ ସଂସ୍ଥା (Adminis trative system) ଥିଲା । (୧)

ସୈନ୍ୟବାହିନୀ ନିମ୍ନଲିଖିତ ବିଭାଗରେ ବିଭକ୍ତ ଥିଲା—

(୧) ୨୦ ଜଣ ପାଇକଙ୍କ ଉପରେ ଜଣେ ଭୂଇଁୟା ବା ଦଳେଇ ।
(୨) ୨୨ ଜଣ ଭୂଇଁୟାଙ୍କ ଉପରେ ଜଣେ ଦଳପତି (Detachment)

ଏହି ଦଳ ସହିତ ଏକ ସ୍ୱେଚ୍ଛାସେବକ ବାହିନୀ, ଯେଉଁ ମାନେ କି ଯୁଦ୍ଧ ବେଳେ ଆହତମାନଙ୍କ ସେବା ଓ ଅନ୍ୟାନ୍ୟ ତଦ୍ବି ନେଉଥିଲେ ।

ଏହି ଦଳର ନିମ୍ନଲିଖିତ ଅଫିସର ସବୁ ଥିଲେ । ତାଙ୍କର ପଦବୀ ଥିଲା—ବାହିନୀପତି ବା ପାଇକରାୟ—(Commanders of infantry division), ଦଳବେହେରା— (Officer commanding detachment), ନାୟକ, ଗଡ଼ନାୟକ — (Garrison Commandants), ବାହୁବଳେନ୍ଦ୍ର— (Officer in-charge of none Combatant force).

ତା ପରେ ରାଜ୍ୟ ପରିଚାଳନାରେ ନିମ୍ନଲିଖିତ ପଦବୀମାନ ସୃଷ୍ଟି ହୋଇଥିଲା ।

(୧) କୋଠ କରଣ— Minister of interrior & Finance.
(୨) ବୈଠି କରଣ— Probably in-charge of affairs of khurda with out side.

(୩) ଛାମୁ କରଣ— Personal Asst. or Private Secretary to the Raja.

---

(୧) The Gajapati kings of Orissa, Page-133-134.
ଏବଂ ପାଇକଖେଦା (ପାଣ୍ଡୁଲିପି)
The Paik kheda appears to have been written in the 17th. century. The instrictions in the Paik kheda were handed down in khetriya families from generation to generation.

(୪) ବକ୍ସି— Head of the military administration.
(୫) ଦେବର୍ତ୍ତା ବା ଦେଓ୍ୱାନ— General Manager or General Administer of the State.

ପାଇକମାନେ (୧) ଅସ୍ତ୍ର ଶସ୍ତ୍ର ଓ ବ୍ୟବସାୟ ଭେଦରେ ସାଧାରଣତଃ ୩ ଶ୍ରେଣୀରେ ବିଭକ୍ତ ହୋଇଥିଲେ ।

(୧) ପାହାଣ୍ଟି ପାଇକ - ଏମାନେ ଲମ୍ବା ଓ ସିଧା ତରବାରି ଏବଂ କାଠରେ ଚମଡ଼ାଆଣି ଓ ଲୁହା ଗୋବଥିବା ଢାଲ ବ୍ୟବହାର କରୁଥିଲେ । ଏମାନେ ସାଧାରଣତଃ ଦୁର୍ଗ ବା ଗଡ଼ରକ୍ଷାରେ ନିଯୁକ୍ତ ଥିଲେ ।

(୨) ବଣୁଆ ପାଇକ — ଏମାନେ ଧନୁଶର, ତୋଡ଼ାଦାର ବନ୍ଧୁକ ବ୍ୟବହାର କରୁଥିଲେ । ଏବଂ ଦୂର ଦେଶକୁ ଯିବା ଏମାନଙ୍କର ପ୍ରଧାନ କାର୍ଯ୍ୟ ଥିଲା ।

(୩) ଡେଙ୍କିଆ ପାଇକ — ଧନୁଶର ଓ ଖଣ୍ଡା ଏମାନଙ୍କର ପ୍ରଧାନ ଅସ୍ତ୍ର । ଏମାନେ ଘୋଡ଼ା ସବାର ବାହିନୀ ଥିଲେ । ଏବଂ ରାଜ୍ୟ ମଧ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା ଠାରୁ ଆରମ୍ଭ କରି ସମ୍ମୁଖ ସମର ପର୍ଯ୍ୟନ୍ତ ସକଳ କାର୍ଯ୍ୟ ପାଇଁ ସବଦା ପ୍ରସ୍ତୁତ ଥିଲେ ।

ଏସବୁ ଛଡ଼ା 'ତଣ୍ଡକାର' ପ୍ରଭୃତି ନିମ୍ନତମ କର୍ମଗୋଷ୍ଠୀ ରୂପେ କାର୍ଯ୍ୟ କରୁଥିଲେ ।

ଖୋର୍ଦ୍ଧା ରାଜାଙ୍କ ଅମଳରେ ଏହି ସବୁ ପଦବୀ ଏବଂ ବିଭାଗ ରହିଥିଲା । କିନ୍ତୁ ଶାସନ କାର୍ଯ୍ୟରେ ସୁବିଧା ଦୃଷ୍ଟିରୁ ଯେଉଁ ଗାଁରେ ଦଳବେହେରା ଥିଲେ ତାଙ୍କ ଅଧୀନରେ ବାରଟି ପଲ୍ଲୀ ଥିଲା । ଏବଂ ସେମାନଙ୍କ ସହିତ ମଧ୍ୟ ଦଳେଇ, ବାହିନୀପତି, କୋଠ କରଣ, ବୈଠି କରଣ, ନାୟକ, ଗଡ଼ନାୟକ, ଛାଟିଆ ପ୍ରଭୃତି ଥିଲେ । ନିଜ ନିଜ ବିଭାଗର କାର୍ଯ୍ୟ ପ୍ରତ୍ୟେକେ, ଦଳବେହେରାଙ୍କ ସାହାଯ୍ୟରେ ତୁଲାଉଥିଲେ । ଅର୍ଥାତ୍ ଖୋଦ ରାଜାଙ୍କର ଯେପରି ବିଭାଗମାନ ଥିଲା, ଜଣେ ଜଣେ ଦଳ

(୧) ଉତ୍କଳ ଇତିହାସ—ପୃଷ୍ଠା ୩୦୪

ବେହେରାଙ୍କ ଅଧୀନରେ ସେହିପରି ବିଭାଗମାନ ଥିଲା । ଦଳବେହେରାଙ୍କ ଠାରୁ ଆରମ୍ଭ କରି ଗ୍ରାମର ଛାଟିଆ ଏପରି କି ସାଧାରଣ ପାଇକଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକେ ଜାଗିର ବୃତ୍ତିଭୋଗୀ ଥିଲେ ।

ଏସବୁ ଜାୟଗିରଦାରଙ୍କ ଉପରେ ନିର୍ଭର କରି ରାଜା ବିଶ୍ୱାସ ଥିଲେ ଯେ ଡାକରା ଦେଲା ମାତ୍ରେ ଅନ୍ତତଃ ୨୦ ହଜାର ସୈନ୍ୟ ଏକାଠି ହୋଇପାରିବେ । ଏହି ଆଶା ଉପରେ ନିର୍ଭର କରି ମନ୍ତ୍ରୀ ଜୟୀରାଜଗୁରୁ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଦୁର୍ଦ୍ଧର୍ଷ ଫିରିଙ୍ଗି ବାହିନୀ ସହିତ ଲଢ଼େଇର ଉଦ୍‌ଯୋଗ କଲେ । କିନ୍ତୁ ସମସ୍ତ ପାଇକ ଏକତ୍ରିତ ହେବା ପୂର୍ବରୁ ଫିରିଙ୍ଗି ବାହିନୀ ଆକ୍ରମଣ ଆରମ୍ଭ କରିଦେଲେ ।

ଇଂରେଜମାନେ ପ୍ରଥମେ ମୁକୁନ୍ଦପ୍ରସାଦ ଛାଉଣୀରୁ ବାହାରି ଗଡ଼ର ଉତ୍ତର ଆଡ଼୍ ଆକ୍ରମଣ ଆରମ୍ଭ କଲେ । ରାଜାଙ୍କର ପାଇକ ସେନା ଗଡ଼ ଭିତରେ ବୃଣଆଡ଼େ ଜଗି ରହିଥିଲେ । ରାଜାଙ୍କ ନଅର ଆଗରେ ରାଜାଙ୍କର କେତୋଟି ଆଗୁଳ ପଥର୍‌କାନ୍ଥ ଥିଲା । ପାଇକମାନେ ଦଳ ଦଳ ହୋଇ ପ୍ରତ୍ୟେକ କାନ୍ଥକୁ ଜଗି ରହିଥିଲେ ।

ଇଂରେଜ ସୈନ୍ୟମାନଙ୍କର ଗଡ଼କାନ୍ଥକୁ ଅତିକ୍ରମ କରିବା ସମ୍ଭବ ହେଲା ନାହିଁ । କିନ୍ତୁ ସେମାନେ ଗଡ଼ର ଚତୁର୍ଦ୍ଦିଗରେ ତୋପ ବସାଇ ଏବଂ ଅନବରତ ବନ୍ଧୁକରୁ ଗୁଳି ଫୁଟାଇ ଗଡ଼ ଅବରୋଧ କଲେ । କିଛି ଦିନ ଧରି ଗଡ଼ ଅବରୋଧ ହେବାରୁ ଭିତରେ ଥିବା ପାଇକ ମାନଙ୍କର ଖାଦ୍ୟ ଅଭାବ ହେଲା ।

ଦଳ ଦଳ ହୋଇ ପାଇକ ଗଡ଼ ମଧ୍ୟରୁ ଗଡ଼ର ଦକ୍ଷିଣ ଦିଗର ଦୁଆର ବାଟେ ରସଦ ସଂଗ୍ରହ ପାଇଁ ଚାଲି ଆସିଲେ । କିନ୍ତୁ ଇଂରେଜଙ୍କର ୭୦୦୦ ସୈନ୍ୟଙ୍କ ପକ୍ଷରେ ରାଜାଙ୍କ ଅପେକ୍ଷା ରସଦ ସଂଗ୍ରହ କରିବାରେ ସୁବିଧା ଥିଲା । ସୈନ୍ୟମାନଙ୍କୁ ରସଦ କିଣି ଆଣିବାକୁ ଏବଂ କେହି ନ ଦେଲେ ଜୋର କରି ନେଇ ଆସିବାକୁ ନିର୍ଦ୍ଦେଶ ଥିଲା । ଏତେଗୁଡ଼ିଏ ସୈନ୍ୟଙ୍କୁ ଦେଖି ପାଖ ଆଖର ଲୋକଙ୍କ ମନରେ ନିଶ୍ଚୟ ଭୟ ସଞ୍ଚାର ହୋଇଥିବ ।

ଏହି ଅବରୋଧ ଅବସ୍ଥାରେ ସମସ୍ତ ପାଇକ ବାହାରକୁ ବାହାରି ଆସିବା ପରେ ଆଉ ମାତ୍ର ଏକ ହଜାର ପାଇକ ଗଡ଼ ଭିତରେ ଥିଲେ ।

ଏହିପରି ପ୍ରାୟ ଫିରିଙ୍ଗି ସୈନ୍ୟମାନଙ୍କ ତରଫରୁ ତିନି ସପ୍ତାହ କାଳ ଗଡ଼ ଅବରୋଧ ଅବସ୍ଥାରେ ରହିବା ପରେ ଇଂରେଜ ସୈନ୍ୟମାନେ ଗଡ଼ କାନ୍ଥକୁ ଭାଙ୍ଗିବାକୁ ଉଦ୍ୟମ କଲେ ।

ଉତ୍ତର ଦ୍ୱାର ନିକଟରେ ଯେଉଁ ଆଗୁଳି କାନ୍ଥ ଥିଲା, ତାହା ଗୋଳା ମାଡ଼ରେ ଭାଙ୍ଗି ପଡ଼ିବାରୁ ଆକ୍ରମଣକାରୀମାନେ ଗଡ଼ ଭିତରେ ପଶିବାକୁ ଆରମ୍ଭ କଲେ ଏବଂ ଗଡ଼ର ଚତୁର୍ଦ୍ଦିଗରୁ ରାଜାଙ୍କୁ ଧରିବାକୁ ଉଦ୍ୟମ କଲେ । କିନ୍ତୁ ସେତେବେଳକୁ ରାଜା ନିଜର ପରିବାରବର୍ଗଙ୍କ ସହିତ ଗଡ଼ରୁ ଖସି ଚାଲିଯାଇ ଥିଲେ । ଗଡ଼ ମଧ୍ୟରେ ପ୍ରବେଶ କରି ବହୁ ପାଇକ ଯୁଦ୍ଧରେ ପ୍ରାଣତ୍ୟାଗ କଲେ ଏବଂ ଅନେକ ପାଇକଙ୍କୁ ଇଂରେଜସୈନ୍ୟମାନେ ବନ୍ଦୀ କଲେ । ଏବଂ ଏହି ବନ୍ଦୀମାନଙ୍କ ମଧ୍ୟରେ ଜୟୀରାଜଗୁରୁ ଥିଲେ ।

ଇଂରେଜମାନେ ତିନି ସପ୍ତାହ କାଳ ଦୁର୍ଗ ଅବରୋଧ କରି ପଡ଼ିଆରେ, ମେଲାରେ ଶୀତ କାକର ଖାଇ, ଅନେକ ବେମାର ହୋଇ ପଡ଼ିଥିଲେ ଏବଂ ଅନେକ ବହୁ ପରିଶ୍ରମ ଯୋଗୁଁ ଦୁର୍ବଳ ହୋଇ ପଡ଼ି ଥିବାରୁ ମୁକୁନ୍ଦଦେବଙ୍କୁ ପିଛାଆଡ଼େ ଖେଦି ଧରିବା ପାଇଁ ହାକିମମାନେ ବ୍ୟବସ୍ଥା କରି ପାରିଲେ ନାହିଁ ।

ମୁକୁନ୍ଦଦେବ ତାପରେ ବାଣପୁର ଜଙ୍ଗଲ ପାର ହୋଇ ଘୁମୁସର ରାଜ୍ୟ ଭିତରେ ଆଶ୍ରୟ ନେଲେ । ସଙ୍ଗେ ସଙ୍ଗେ ଘୁମୁସରରୁ ରାଜାଙ୍କୁ ଧରିବାକୁ ଇଂରେଜଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । କାରଣ ସେତେ-ବେଳେ ଘୁମୁସର ରାଜ୍ୟ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଥାଇ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଶାସିତ ହେଉଥିଲା । ତେଣୁ ସେଠାକୁ ଲେଖା ଲେଖି କରି ଧରାଇବାର ବନ୍ଦୋବସ୍ତ କରିବାରେ ସେମାନଙ୍କୁ ସମୟ ଦରକାର; କାରଣ ମାନ୍ଦ୍ରାଜ କମିସନରଙ୍କ ଅନୁମତି ବିନା ଓଡ଼ିଶାର କୌଣସି କର୍ମଚାରୀ ସେ ଅଞ୍ଚଳରେ ପଶିବାକୁ ମନା ଥିଲା । ପୁଣି ଓଡ଼ିଶାର କମିଶନରମାନେ ବଙ୍ଗ ସରକାରଙ୍କ ଜରିଆରେ ଚିଠି ଦେଇ ଏହାର ବ୍ୟବସ୍ଥା କରାଇବାର କଥା ।

ମୋଗଲ ଓ ମରହଟ୍ଟା ଶକ୍ତିକୁ ବାରମ୍ବାର ପ୍ରତିରୋଧ କରିଥିବା ଦୁର୍ଭେଦ୍ୟ ବରୁଣେଇ ଦୁର୍ଗ ଫିରିଙ୍ଗି ସୈନ୍ୟଙ୍କ ଗୋଳା ମାଡ଼ରେ ଧୂଳିସାତ୍ ହେବା ସଙ୍ଗେ ସଙ୍ଗେ ଶହ ଶହ ବର୍ଷ ଧରି ଓଡ଼ିଶାର ଗୌରବୋଜ୍ଜ୍ୱଳ ସ୍ୱାଧୀନତାର ଗୌରବ ରବି ଅସ୍ତମିତ ହେଲା ।

ଜୟୀ ରାଜଗୁରୁ, ଯାହାଙ୍କର ଓଡ଼ିଆ ଜାତି, ତଥା ରାଜା ମୁକୁନ୍ଦ ଦେବଙ୍କର ମାନ ଓ ମର୍ଯ୍ୟାଦା ରକ୍ଷା ପାଇଁ ମନ ମଧ୍ୟରେ ଅଦମ୍ୟ ପ୍ରେରଣା ଥିଲା ତାହାଙ୍କୁ ଫିରଙ୍ଗି ସୈନ୍ୟମାନେ ଧରି ନେଲେ ଏବଂ ଜଣେ ନିସ୍ୱାର୍ଥପର ସଚ୍ଚା ଦେଶ ଭକ୍ତଙ୍କୁ କୌଣସି ଏକ ବରଗଛରେ ଫାଶୀରେ ଝୁଲାଇ ଦେଲେ । ତାଙ୍କର ଏହି ତ୍ୟାଗକୁ ଓଡ଼ିଆ ଜାତି ଭୁଲି ନାହିଁ କି ଭୁଲି ପାରିବ ନାହିଁ । ଜୟୀ ରାଜଗୁରୁ ହେଉଛନ୍ତି ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଅମର ଶହୀଦ ।

ମୁକୁନ୍ଦ ଦେବ ଖୋର୍ଦ୍ଧାରୁ ଘୁମୁସରକୁ ପଳାଇଯିବା ପରେ ଇଂରେଜମାନେ କାଳ ବିଳମ୍ବ ନ କରି ୧୮୦୪ ଡିସେମ୍ବର ୫ ତାରିଖ ଦିନ ଖୋର୍ଦ୍ଧା ରାଜାଙ୍କୁ ବିଦ୍ରୋହୀ ଭାବରେ ଗାଦିଚ୍ୟୁତ ବୋଲି ଘୋଷଣା କଲେ ।

ଡିସେମ୍ବର ୭ ତାରିଖ ଦିନ ସବୁ ରେସିଡେଣ୍ଟ, ଜମିଦାର, ସରବରାକାର, ମକଦ୍ଦମ ପ୍ରଭୃତିଙ୍କୁ ଆଦେଶ ଦେଲେ ଯେ, ଖୋର୍ଦ୍ଧାରେ ବାସ କରୁଥିବା ସମସ୍ତ ପ୍ରଜା ଇଂରେଜ ସରକାରଙ୍କ ଅଧୀନତା ସ୍ୱୀକାର କରିବେ ଏବଂ ସରକାର ଯାହା ଆଦେଶ ଦେଉଥିବେ ତାହାକୁ ପାଳନ କରିବେ । ୯ ତାରିଖ ଦିନ ବଡ଼ ଦେଉଳର ମୁଖ୍ୟ ପରିଚ୍ଛା ଓ ଶ୍ରୀକ୍ଷେତ୍ରର ମହଡ଼ାଦାର ମୋହର ପଣ୍ଡିତଙ୍କୁ ଆଦେଶ ଦିଆଗଲା ଯେ, ରାଜା ମୁକୁନ୍ଦ ଦେବ ଇଂରେଜ ସରକାରଙ୍କର ପରମ ଶତ୍ରୁ ହୋଇ ଥିବାରୁ ତାଙ୍କ ନାମ ଆଉ ପୂଜା ବେଳେ ଉଚ୍ଚାରଣ କରାଯିବ ନାହିଁ । ଏହି ଆଦେଶମାନ ପାଳନ କରିବାରେ ଯେ କେହି ଖିଲାପ କରିବ ସେ କଠୋର ଦଣ୍ଡରେ ଦଣ୍ଡିତ ହେବ ।

ଖୋରଧାର ଜମିଦାର, ମକଦ୍ଦମ, ସରବରାକାର ମାନଙ୍କୁ ଆଦେଶ ହେଲା ଯେ ରାଜାଙ୍କ ନାମରେ ସେମାନଙ୍କ ଠାରୁ କେହି କରଜ କରିଥିଲେ ସେଥିରେ ସରକାର ଦାୟୀ ହେବେ ନାହିଁ ।

ଖୋର୍ଧାରେ ନିଜର ଶାସନ ଓ ଆସ୍ଥାନକୁ ଦୃଢ଼ କରିବା ପାଇଁ ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରିବା ଘୋଷଣା ସଙ୍ଗେ ସଙ୍ଗେ ନିମାଇଁ ଚରଣ ଦାସଙ୍କୁ ନୂଆ ତହସିଲଦାର, ଓଆଜ ମହମ୍ମଦଙ୍କୁ କାଲଟର କଚେରୀର ଜଣେ ପ୍ରଧାନ କର୍ମଚାରୀ ରୂପେ ଓ ଶେଖ୍ ଇଜଦ୍ ବକ୍ସଙ୍କୁ ଦାରୋଗା ରୂପେ ନିଯୁକ୍ତ କରି ଖୋର୍ଦ୍ଧାକୁ ଖାସମାହାଲ ରୂପେ ଘୋଷଣା କଲେ ଏବଂ ୩ ଟି ଶାସନଗତ ବିଭାଗରେ ପରିଣତ କଲେ ।

ଖୋର୍ଦ୍ଧାରେ ଏକ ଥାନା ପ୍ରତିଷ୍ଠା କରି ତା ଅଧୀନରେ ୬୯୧ ଟି ଗ୍ରାମକୁ ନେଇ ୮ ଟି ଆଉଟପୋଷ୍ଟ ଏବଂ ବାଣପୁର ଥାନା ଅଧୀନରେ ପାଞ୍ଚଟି ଆଉଟପୋଷ୍ଟ ପ୍ରତିଷ୍ଠା କଲେ । ପୂର୍ବରୁ ଏହି ଖୋର୍ଦ୍ଧା ଦୁଇଟି ପ୍ରଧାନ ଭାଗରେ ବିଭକ୍ତ ଥିଲା — ଖୋର୍ଦ୍ଧା ଏବଂ ପାଞ୍ଚଗଡ଼ । ଏହି ଦୁଇଟି ଭାଗ ମଧ୍ୟରେ ଦଶଟି କିଲ୍ଲା ବା ପ୍ରଧାନ ଗଡ଼ ଥିଲା । ସେମାନଙ୍କ ନାମ ପୂର୍ବରେ ବର୍ଣ୍ଣିତ ହୋଇଛି । କିନ୍ତୁ ସେହି କିଲାଗୁଡ଼ିକ କେତେଗୁଡ଼ିଏ ଜିଲ୍ଲାରେ ବିଭକ୍ତ ଥିଲା । ସବୁ ଥାନା ଓ ଆଉଟ୍ ପୋଷ୍ଟରେ ପୋଲିସ ଓ ଗୁଳି ନଳୀର ବ୍ୟବସ୍ଥା ରହିଲା ।

ତା ପରେ ପରେ ଖୋର୍ଦ୍ଧା ନିକଟ ରାମେଶ୍ୱର ଗଡ଼ର ଦଳ-ବେହେରା ବଳସ୍ପାରସିଂହ ଓ ତାଙ୍କ ଭାଇ ଭିକାରୀ ବଳଆରସିଂହଙ୍କୁ କମିସନର ଜଣାଇ ଦେଲେ ଯେ, ସେମାନେ ମୁକୁନ୍ଦଦେବଙ୍କୁ ସାହାଯ୍ୟ କରୁଥିବା ଖବର ସରକାର ପାଇଥିବାରୁ ସେମାନଙ୍କ ପ୍ରତି ସରକାର ଅସନ୍ତୁଷ୍ଟ ଅଛନ୍ତି । ଭବିଷ୍ୟତରେ ସେମାନେ ଏଥିରୁ ନିବୃତ୍ତ ନହେଲେ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯିବ । (୧)

ମେଣ୍ଟ୍ରିଶାଳର ଖଣ୍ଡାୟତ ଜଗାଲସିଂହ ମୁକୁନ୍ଦଦେବଙ୍କୁ କାଳେ ସାହାଯ୍ୟ କରିବେ, ଏଇ ଆଶଙ୍କାରେ ତାଙ୍କ ଉପରେ କଡ଼ା ନଜର ଦେବା ପାଇଁ ସରକାରୀ ହୁକୁମ ହେଲା । ମୁକୁନ୍ଦଦେବଙ୍କ ପ୍ରତି ନିଷ୍ଠୁର ବ୍ୟବହାର ଯୋଗୁଁ ଲୋକେ ସ୍ଥାନେ ସ୍ଥାନେ ଡାକ ଲୁଣ୍ଠନ, ଖଜଣା ଆଦାୟରେ ବାଧା ଦାନ ଇତ୍ୟାଦି କରୁଥିଲେ । ମେଣ୍ଟ୍ରିଶାଳର ଏଇ ସରକାରୀ ବିରୋଧି କାର୍ଯ୍ୟକୁ ଲୋକମାନଙ୍କ ଉପରେ ଅତ୍ୟାଚାର ହେଉଛି

---

(୧) ସ୍ୱାଧୀନତା ସଂଗ୍ରାମର ଇତିହାସ ଓ Freedom movement in Orissa Vol. I

ବୋଲି ଚିହ୍ନଟ କରି ଉଗାଳସିଂହଙ୍କୁ ଏହାର ନିରାକରଣ ପାଇଁ ଆଦେଶ ଦେଲେ ଏବଂ କମିସନର କର୍ଣ୍ଣେଲ ହାରକୋର୍ଟ ସାହେବ ମେଣ୍ଢାଶାଳକୁ ଦୁଇଟି ଚପରାଶି ପଠାଇଲେ । ଚପରାଶି ଦୁଇଟି ମେଣ୍ଢାଶାଳରେ ଶାନ୍ତି ସ୍ଥାପନ କରିବାରେ ସମର୍ଥ ହୋଇ ପାରିଥିଲେ । ଏଥିରୁ ଅସହାୟ ଅବସ୍ଥାର ଚିତ୍ର ସହଜରେ ଅନୁମେୟ ।

ପାଞ୍ଚଗଡ଼ର ଲୋକେ ସରକାରୀ ଲୋକଙ୍କୁ ଓ ସୈନ୍ୟବାହିନୀକୁ ଧାନ ଚାଉଳ ବିକିବାକୁ ମଙ୍ଗୁ ନଥିଲେ । ଏହି ମନୋଭାବ ଛାଡ଼ିବା ପାଇଁ ଲୋକଙ୍କ ଉପରେ କଡ଼ା ଆଦେଶ ଜାରି ହେଲା ।

ଗଡ଼ ହଲଦିଆର ଖଣ୍ଡାୟତ ଓ ଜମିଦାର ଭଗବାନ ବୀରବର ଜଗଦେବଙ୍କୁ ନୂତନ ସନନ୍ଦରେ ସ୍ୱାକ୍ଷର କରିବା ପାଇଁ ଆଦେଶ ହେଲା । ଏବଂ ସରକାରଙ୍କ ଆଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ସର୍ତ୍ତ ରଖାଗଲା ।

ଦାଣ୍ଡିମାହାଲରେ ଦାମୋଦର ପଟ୍ଟନାୟକ ଓରଫେ ସରକାର ଭକ୍ତ କହ୍ନେଇ ଶତପଥୀଙ୍କ ଘରେ ପଶି କେତେକ ସଂପତ୍ତି ଲୁଟିକରି ନେଇଥିଲେ । ମୁକୁନ୍ଦଦେବଙ୍କ ଗାଦିଚ୍ୟୁତିର ଫଳ ଏହା ହୋଇଥିବା ଆଶଙ୍କା କରି ଏହାର ଶୀଘ୍ର ପ୍ରତିକାର ପାଇଁ ଦୁଇଜଣ ଚପରାଶିଙ୍କୁ ଦାଣ୍ଡିମାହାଲକୁ ପଠାଇଲେ ।

ଡିସେମ୍ବର ମାସ ମଧ୍ୟ ଭାଗରେ କମିସନର କର୍ଣ୍ଣେଲ ହାରକୋର୍ଟ ଖୋର୍ଦ୍ଧା ଅଞ୍ଚଳର ସବୁ ଜମିଦାର ଓ ଖଣ୍ଡାୟତମାନଙ୍କୁ ଡକାଇ ଇଂରେଜମାନଙ୍କର ଆନୁଗତ୍ୟ ସ୍ୱୀକାର କରିବା ପାଇଁ ଅନୁରୋଧ କରିଥିଲେ । ମୁକୁନ୍ଦଦେବ ଇଂରେଜ ବିରୋଧୀ ଥିବାରୁ ତାଙ୍କୁ କୌଣସି ପ୍ରକାର ସାହାଯ୍ୟ ନଦେବା ପାଇଁ ହାକିମ ଆଦେଶ ଦେଇଥିଲେ ।

ମୁକୁନ୍ଦଦେବଙ୍କୁ ଧରିବା ପାଇଁ ସରକାର ବହୁ ଉଦ୍ୟମ କଲେ । କିନ୍ତୁ କୌଣସି ଉପାୟରେ ତାଙ୍କୁ ଧରିବାରେ ସଫଳ ନ ହେବାରୁ ରାଜାଙ୍କ ନିକଟ ସମ୍ପର୍କୀୟ ଲୋକମାନଙ୍କ ହାତରେ ଖବର ଦେଲେ ଯେ, ରାଜା ଆତ୍ମସମର୍ପଣ କଲେ ତାଙ୍କ ପ୍ରତି ସଦୟ ବିଚାର କରାଯିବ ।

ଏଥିରେ କୌଣସି ଫଳ ନ ହେବାରୁ ସରକାର ମୁକୁନ୍ଦଦେବଙ୍କୁ ଧରି ନେବାକୁ ପୁରସ୍କାର ଘୋଷଣା କଲେ ।

ତେଣେ ମୁକୁନ୍ଦଦେବ ଦେଖିଲେ ଯେ, ତାଙ୍କୁ ପରାମର୍ଶ ଦେବାକୁ ଆଉ ଜୟୀରାଜଗୁରୁ ନାହାନ୍ତି । ଇଂରେଜ ସରକାର ପିପିଲି ପ୍ରଭୃତି ସମସ୍ତ ଘଟଣାରେ ନିଜେ ସେ ସଂପୃକ୍ତ ନଥିଲେ ମଧ୍ୟ ତାଙ୍କୁ ଦାୟୀ କରୁଛନ୍ତି, ଏବଂ ନିଜର ପାଇକ ବାହିନୀ ଇଂରେଜଙ୍କ ଆକ୍ରମଣରେ ବ୍ୟତି-ବ୍ୟସ୍ତ ହୋଇ ଯାଇଛନ୍ତି ଏବଂ ଖୋର୍ଦ୍ଧା ଗୁଡ଼ ବହୁ ସୈନ୍ୟ ସପରିବାରେ ପାଖ ଗଡ଼ଜାତମାନଙ୍କୁ ପଳାଇଛନ୍ତି । ତା ଛଡ଼ା ଇଂରେଜ ବାହିନୀ ତିନି ଦିଗରୁ ଆଧୁନିକ ଅସ୍ତ୍ର ଶସ୍ତ୍ର ସହ ଆକ୍ରମଣ କରିପାରିବାର ସାମର୍ଥ୍ୟ ସହ ଆକ୍ରମଣ କରିଛନ୍ତି । ଏହିସବୁ ଭାବନାର ବଶବର୍ତ୍ତୀ ହୋଇ ଏବଂ ଘୁମୁସର ରାଜାଙ୍କ ପରାମର୍ଶରେ ସେ ଆତ୍ମସମର୍ପଣ କରିବାକୁ ସ୍ଥିର କଲେ ।

ପରିଶେଷରେ ଘୁମୁସର ରାଜାଙ୍କ ପରାମର୍ଶ ଏବଂ ତାଙ୍କ କୁଟୁମ୍ବର ଜଗନ୍ନାଥ ଭଞ୍ଜଙ୍କ ଯତ୍ନରେ ମୁକୁନ୍ଦଦେବ ନିଜେ ନିଜେ ଧରା ଦେଲେ । କିନ୍ତୁ ଆଗରୁ ସରକାରୀ ଭବେ ପୁରସ୍କାର ଘୋଷଣା ହୋଇଥିବାରୁ ସରକାରଙ୍କ ଦ୍ୱାରା ନିଯୁକ୍ତ ଅଫିସର ଫତେ ମହମ୍ମଦଙ୍କୁ ପୁରସ୍କାର ଦିଆଗଲା । (୧) ଏହି ଅଫିସରଙ୍କ ନିକଟରେ ମୁକୁନ୍ଦଦେବ ଧରା ଦେଇ ଥିଲେ ।

ରାଜାଙ୍କ ଆତ୍ମସମର୍ପଣ ପରେ ତାଙ୍କୁ କଟକର ବାରବାଟୀ ଦୁର୍ଗରେ ପ୍ରଥମେ ବନ୍ଦୀ କରାଗଲା । ସେଠାରେ ରହିଲେ ପୁଣି କାଳେ ତାଙ୍କ ପ୍ରଭାବରେ ଗଣ୍ଡଗୋଳ ଆରମ୍ଭ ହୋଇପିବ, ସେଥିପାଇଁ ତାଙ୍କୁ

---

(୧) Makund Dev was arrested in about January 1805. The Commissioner in their letter of the 5th. January 1805 to Sri Krishna Dev, Treasurer, directed payment of a reward of Rs 3000/- to Sk. Fateh Mahamad who arrested Mukund Dev, Raja of Khurda. was kept in confinment at Midinapur till 1807 ( F. M. in orissa–Page 78 )

ନେଇ ମେଦିନୀପୁର ଜେଲରେ ଅଟକ କରି ରଖାଗଲା ଏବଂ ଜୟୀ ରାଜ-ଗୁରୁଙ୍କ ସହିତ ଏହି ବିଦ୍ରୋହର ଅନେକ ନେତା ପ୍ରାଣ ଦଣ୍ଡରେ ଦଣ୍ଡିତ ହେଲେ ।

ଏହି ବିଦ୍ରୋହର ନିର୍ଦ୍ଦୋଷ ଅପରାଧରେ ଖୋରଧା ରାଜବଂଶର ବିଗତ ତିନିଶତ ବର୍ଷର ରାଜତ୍ୱ ଲୋପ ପାଇଲା । ସମସ୍ତ ଖୋରଧା ଇଂରେଜଙ୍କ ଖାସ୍ ମାହାଲରେ ପରିଣତ ହେଲା ।

ମୁକୁନ୍ଦଦେବ ଧରାହେବାଠାରୁ ଅର୍ଥାତ ୧୮୦୫ ଜାନୁଆରୀମାସ ଠାରୁ ବନ୍ଦୀ ହୋଇ ରହିବା ପରେ ସରକାରଙ୍କୁ ଏକ ଦରଖାସ୍ତ ଦ୍ୱାରା ତାଙ୍କର ନିରୀହ ଆପତ୍ତି ଜଣାଇଲେ । (୧) ତାପରେ ତାଙ୍କୁ ୧୮୦୭ ମସିହାରେ ମୁକ୍ତ ଦିଆଗଲା । ମୁକୁନ୍ଦଦେବ 'ନାନାକାର' ବା ମାଲିକାନା ସୂତ୍ରେ ଖୋରଧା ନିମନ୍ତେ ମାସିକ ୨୧୩୩ ଟଙ୍କା ୫ ଅଣା ବୃତ୍ତି ପାଇଲା ପାଇବାର ଧାର୍ଯ୍ୟ ହେଲା । ପୁରୀର ବାଲି ସାହିରେ ଥିବା ରାଜ ନଅରରେ ମୁକୁନ୍ଦଦେବ ବାସ କରିବାକୁ ଆଦିଷ୍ଟ ହେଲେ । ବାଲିସାହି ନଅର ବର୍ତ୍ତମାନ ଭାଙ୍ଗି ଯାଇଛି । ତଥାପି ତାହା ଅଦ୍ୟାପି 'ପୁରୁଣା ନଅର' ନାମରେ ପରିଚିତ । ପୁରୀ ମନ୍ଦିରର ସମସ୍ତ ପରିଚାଳନା ଦାୟିତ୍ୱ ତାଙ୍କ ହସ୍ତରେ ଅର୍ପିତ ହେଲା ।

ଏସବୁ ଘଟିଯିବା ପରେ ମଧ୍ୟ ଇଂରେଜମାନେ ଓଡ଼ିଆ ଜାତିକୁ କିପରି ବିଚାରୁଥିଲେ ତାହା ସେତେବେଳର ଜଣେ ଇଂରେଜ ମୁଖ୍ୟଙ୍କ ଲେଖାରୁ ଜାଣି ହେବ । "ନଦୀ ଶ୍ରେଣୀ ଉତ୍କଳକୁ ଜାଲ ଛନ୍ଦିଲା ପରି ବେଷ୍ଟନ କରି ରହିଅଛନ୍ତି ଏବଂ ପର୍ବତ ଶ୍ରେଣୀ ପ୍ରାଚୀର ସ୍ୱରୂପ ବେଷ୍ଟନ କରି ରହିଅଛନ୍ତି । ଏ ଗୁଡ଼ିକ ଉତ୍କଳର ନୈସର୍ଗିକ ରକ୍ଷାକାରୀ । ଦୁର୍ଗ, ଗଡ଼ ଓ କଟକମାନ ବିସ୍ତୃତ ଭାବରେ ଉତ୍କଳରେ ଅଛି । ଏ ସମସ୍ତ ବର୍ତ୍ତମାନ ଓଡ଼ିଶା ଆକ୍ରମଣ ପ୍ରତି ଦୁର୍ଭେଦ୍ୟ । କେତେ ଆଶା, କେତେ ଚେଷ୍ଟା, କେତେ ମନ୍ତ୍ରଣା ପରେ ୩୯୦ ବର୍ଷ ଚାଲିଗଲା କିନ୍ତୁ ଆଫଗାନମାନେ

(୧) Drawing his confinement in Medinapur, he submitted a petition to the government stating all the facts of his innocence ( F. M, in Orissa-Page 78 )

ଓଡ଼ିଶାକୁ ଅଧୀନକରିପାରି ନଥିଲେ ଏବଂ ଓଡ଼ିଆମାନେ ଆପଣା ଜାତୀୟତା ଉପରେ ବିଶ୍ୱାସ ରଖି ଦୃଢ଼ ଭାବରେ ଦଣ୍ଡାୟମାନ ହୋଇ ମସ୍ତକୋତ୍ତୋଳନ କରିଥିଲେ । ସେମାନଙ୍କର ରାଜା ତାଙ୍କଠାରେ ନ୍ୟସ୍ତ ଥିବା ଦାୟିତ୍ୱ ପ୍ରତି ବିଶ୍ୱସ୍ତ ନ ହେବାରୁ ଓଡ଼ିଆମାନେ ଓଡ଼ିଶା ହରାଇ ବସିଲେ ମାତ୍ର ଓଡ଼ିଆମାନେ ପରାଜିତ ହୋଇ ନଥିଲେ ।" (୧)

ଏହି ଘଟଣା ଘଟିବା ପରେ ଖୋର୍ଦ୍ଧା ଖାସ ମାହାଲର ଶାସନ କାର୍ଯ୍ୟ ପରିଚାଳନା ପାଇଁ ମେଜର ଫ୍ଲେଚର ନିଯୁକ୍ତ ହେଲେ ଏବଂ ଖୋରଧା ସରକାରୀ କଚେରୀ ପ୍ରଥମେ ନିର୍ମାଣ କଲେ । ପାଇକମାନଙ୍କ ପ୍ରତି ତାଙ୍କର ବ୍ୟବହାର ଅତି କଠୋର ଥିଲା । ପାଇକମାନେ ଆବହମାନ କାଳରୁ ଯେଉଁ ନିଷ୍କର ଜାଗୀର ଭୋଗ କରି ଆସୁଥିଲେ, ଫ୍ଲେଚର ସେ ସମସ୍ତ ୧୮୦୪ ସାଲରେ ଏକ ଜମିଜମା ବନ୍ଦୋବସ୍ତ କରାଇ ପାଇକ ମାନଙ୍କଠାରୁ ଛଡ଼ାଇ ନେଲେ ଏବଂ ସେହି ଜମି ଉପରେ ଜମା ଧାର୍ଯ୍ୟ କଲେ । ରାଜସ୍ୱ ଆଦାୟ ନିମନ୍ତେ ଯେଉଁ ସରବରାକାରମାନେ ନିଯୁକ୍ତ ହେଲେ, ସେମାନେ କଠୋର ଭାବରେ କର ଆଦାୟ କରି ପାଇକ ମାନଙ୍କ ଉପରେ ଅତ୍ୟାଚାର କଲେ । ତା ପରେ ପରେ ପାପାଚାରୀ ପୁଲିସ କର୍ମଚାରୀମାନଙ୍କ ଅତ୍ୟାଚାର ଆହୁରି ଅସହ୍ୟ ହୋଇ ଉଠିଲା । ସେତେବେଳେ ବଙ୍ଗାଳୀମାନେ ସରକାରଙ୍କ ପ୍ରଧାନ ପ୍ରଧାନ କର୍ମଚାରୀ ଥିଲେ । ଏହି ସମ୍ପର୍କରେ ଐତିହାସିକ R. D. Banerjee ଲେଖିଛନ୍ତି :—

"Having control of Judicial and executive work, the Bengali found Orissa an easy means to get rich quick. He had no competitors in the field and the British officers had to rely entirely on them. Police extortion and sale of public Justice was carried on entirely through Bengalis" (୨)

ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ବଙ୍ଗାଳୀ କର୍ମଚାରୀମାନେ କଦର୍ଯ୍ୟ ଆଚରଣ କରି ହଠାତ୍ ଧନୀ ହୋଇ ଯାଉଥିଲେ । ଇଂରେଜମାନେ

(୧) History of Orissa by Toyenabee.

(୨) History of Orissa, P.–279 by R. D. Banerjee.

ଏହିମାନଙ୍କ ଉପରେ ସମସ୍ତ ନିର୍ଭର କରି ଚଳୁଥିଲେ । ନ୍ୟାୟ ନିକିତି ଏମାନଙ୍କ ହାତରେ ଥିଲା । ମନଇଚ୍ଛା ସେମାନେ ଯାହା ପାରୁଥିଲେ ତା କରୁଥିଲେ । ଏବଂ ଏହି ସଂପର୍କରେ ଜଣେ ଇଂରେଜଙ୍କ ନିଜ ମତ ଉଦ୍ଧାର କରି ଦେଖିଲେ ସେତେବେଳର ଚିତ୍ର ଆଖି ଆଗରେ ଘୂରିଉଠିବ । O' Malley ଲେଖିଛନ୍ତି:—

"Nor was this all. Deprived of the lands which they had enjoyed from time immemorial, they were subjected to the grossest extortion and oppression to the hands of the farmers, Sarbarakars and other under lings to whom our government entrusted the collection of the revenue and also to the tyrannies of a currupt and renal Police (୧)

ଆବହମାନ କାଳରୁ ଭୂମିରାଜସ୍ୱ ଶସ୍ୟ କିମ୍ବା କଉଡ଼ି ଆକାରରେ ଦିଆହୋଇଆସୁଥିଲା । ଇଂରେଜ ସରକାର ଏହା (Sicca Rupee) ସିକା ଟଙ୍କାରେ ଆଦାୟ କରିବାକୁ ବଦ୍ଧପରିକର ହେଲେ ଏବଂ ସଙ୍ଗେ ସଙ୍ଗେ ଗୋଟିଏ ସିକା ଟଙ୍କାର ମୂଲ୍ୟ ୫୧୨° କଉଡ଼ି ସ୍ଥିର କଲେ । ସେହି ସମୟରେ କଟକ ବଜାରରେ ୭ କାହାଣ କଉଡ଼ି ବଦଳରେ ଟଙ୍କାଟିଏ ମିଳୁଥିଲା (୨) । କିନ୍ତୁ ପ୍ରକୃତରେ ଗ୍ରାମ ମହାଜନମାନଙ୍କଠାରେ କଉଡ଼ି ବଦଳେଇ ଟଙ୍କା ନେଲା ବେଳକୁ ସାଧାରଣ ଲୋକଙ୍କୁ ପ୍ରତି ଟଙ୍କା ପିଛା ୭୬୮° କଉଡ଼ି ଦେବାକୁ ପଡ଼ୁଥିଲା । ଏହା ଉପରେ ସରବରାକାର ଏବଂ ସେମାନଙ୍କ ରାଜସ୍ୱ ଆଦାୟକାରୀ କର୍ମଚାରୀମାନଙ୍କର ଅଯଥା ବଳ ଦାବୀ ମଧ୍ୟ ଥିଲା । ଆବହମାନ କାଳରୁ ନିଷ୍କର ଭୋଗ କରୁଥିବା ବୃତ୍ତିଭୋଗୀ ପାଇକମାନେ ଏହିରୂପେ ରାଜସ୍ୱ ଆଦାୟ ଦେବାକୁ ଘୋର ଯନ୍ତ୍ରଣା ଭୋଗୁଥିଲେ । ଏହି ନୂଆ ନିୟମରେ ଚାଷୀମାନେ ରାଜସ୍ୱ ଦେବା ବେଳେ ବହୁ ଯନ୍ତ୍ରଣା ଭୋଗ କଲେ ଏବଂ କ୍ଷତିଗ୍ରସ୍ତ ହେଲେ । ସେମାନଙ୍କର

(୧) Bengal District gazetter Puri P. 51.

(୨) Selection from the correspondence on the settlement of Khurda Estate in District of Pooree 1876. P-34.

ଆର୍ଥିକ ଅବସ୍ଥା ବେଲକୁବେଳ ଖରାପଆଡ଼କୁ ଗଡ଼ିକଲା । ଶେଷକୁ ରାଜସ୍ୱ ଦେଇ ନପାରି ଅନେକେ ନିଜ ନିଜର ଜମି ହରାଇଲେ । ବଂଗୀୟ ଫୌଜଦାରୀ ଓ ପୋଲିସ ସଂକ୍ରାନ୍ତ ସକଳ ଆଇନ ଓଡ଼ିଶାରେ ଜାରି ହେଲା । ପରେ ପରେ ବଙ୍ଗୀୟ ଦେବାନୀ ଆଇନ ଓଡ଼ିଶାରେ ଚଳିଲା । ବୋର୍ଡ଼ ଅଫ କମିଶନରଙ୍କ ଆଦେଶରେ ୧୮୦୪ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ବନ୍ଦୋବସ୍ତ ଆରମ୍ଭ ହୋଇ ପରବର୍ଷ ଶେଷ ହେଲା । ପ୍ରଥମ ବନ୍ଦୋବସ୍ତରେ ଇଂରେଜମାନେ ମରହଟ୍ଟା ପଦ୍ଧତି ଅନୁସାରେ ଚାଳିତ ହୋଇଥିଲେ । ଏହି ବନ୍ଦୋବସ୍ତ ବର୍ଷକ ପାଇଁ ହୋଇଥିଲା । ତାହାପରେ ପୁଣି ୧୮୦୫ ଖ୍ରୀଷ୍ଟାବ୍ଦରେ ୩ ବର୍ଷ ପାଇଁ ନୂତନ ବନ୍ଦୋବସ୍ତ ହେଲା । ଦ୍ୱିତୀୟ ବନ୍ଦୋବସ୍ତର କାଳ ୧୮୦୮ ରେ ପୂରିଯିବାରୁ ତୃତୀୟ ବନ୍ଦୋବସ୍ତ ଏକ ବର୍ଷ ପାଇଁ ଏବଂ ୪ ର୍ଥ ବନ୍ଦୋବସ୍ତ ୩ ବର୍ଷ ସକାଶେ ହେଲା । ପରେ ପୁଣି ୫ମ ବନ୍ଦୋବସ୍ତ ଏକ ବର୍ଷ ପାଇଁ ୧୮୧୨-୧୩ ରେ, ୧୮୧୩-୧୪ ରେ ଷଷ୍ଠ ବନ୍ଦୋବସ୍ତ ୨ ବର୍ଷ ପାଇଁ, ୧୮୧୫-୧୬ ରେ ୭ମ ବନ୍ଦୋବସ୍ତ ୧ ବର୍ଷ ପାଇଁ, ୧୮୧୬-୧୭ ରେ ଅଷ୍ଟମ ବନ୍ଦୋବସ୍ତ ୩ ବର୍ଷ ପାଇଁ ଏବଂ ୧୮୧୯-୨୦ ରେ ନବମ ବନ୍ଦୋବସ୍ତ ୩ ବର୍ଷ ପାଇଁ, ଏବଂ ୧୮୨୨-୨୩ ରେ ଦଶମ ବନ୍ଦୋବସ୍ତ ୫ ବର୍ଷ ପାଇଁ—ଏହିରୂପେ ଏକଶାଲା, ଦୋଶାଲା, ତିଶାଲା ଇତ୍ୟାଦି ବନ୍ଦୋବସ୍ତ ୧୮୨୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଘନ ଘନ ଆରମ୍ଭ କରାଗଲା । ପ୍ରଥମେ ୧୮୦୪ ଖ୍ରୀଷ୍ଟାବ୍ଦର ସେପ୍‌ଟେମ୍ବର ମାସରେ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଓଏଲସଲି ଘୋଷଣା କରିଥିଲେ ଯେ ଏହିରୂପେ ଘନ ଘନ ବନ୍ଦୋବସ୍ତ କରାଯାଇ ଶେଷରେ ୧୮୧୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ବଙ୍ଗଦେଶ ପରି ଚିରସ୍ଥାୟୀ ବନ୍ଦୋବସ୍ତ କରାଯିବ । ମାତ୍ର ତାହା ନ କରାଯାଇ ପରେ ପରେ ବହୁ ବନ୍ଦୋବସ୍ତ କରାଗଲା । ପ୍ରଥମ ବନ୍ଦୋବସ୍ତରେ ଓଡ଼ିଶାର ଜମା ସ୍ଥିର ହୋଇଥିଲା, ୪ ଲକ୍ଷ ୪୩ ହଜାର ଟଙ୍କା । ମାତ୍ର ପ୍ରତି ବନ୍ଦୋବସ୍ତରେ ତାହା ବଢ଼ି ବଢ଼ି ୧୮୧୮ ଖ୍ରୀଷ୍ଟାବ୍ଦରେ ଜମା ହେଲା ୧୬,୪୭,୯୨୪ ଟଙ୍କା । ୧୮୧୮ ଖ୍ରୀଷ୍ଟାବ୍ଦର ବନ୍ଦୋବସ୍ତ ଠାରୁ ଓଡ଼ିଶାର ପ୍ରଥମ ଜରିବ ବା ମାପ ଆରମ୍ଭ କରାଗଲା ।

ଏହି ସବୁ ଘନ ଘନ ବନ୍ଦୋବସ୍ତ ଦ୍ୱାରା ପ୍ରଜାମାନେ ବିଶେଷ ପ୍ରପୀଡ଼ିତ ହେଉଥିଲେ । ପୂର୍ବବର୍ତ୍ତୀ ରାଜତ୍ୱମାନଙ୍କରେ ରାଜ କର୍ମଚାରୀ-ମାନେ ଜମିର ଆଦାୟ ଅନୁସାରେ ଜମାଧାର୍ଯ୍ୟ କରୁଥିଲେ । ସୁତରାଂ

କୃଷି ହାନି, ଧୋଇ, ମରୁଡ଼ିରେ ପ୍ରଜାମାନେ କର ଛାଡ଼ ପାଉଥିଲେ । ପୂର୍ବ ରାଜତ୍ୱମାନଙ୍କରେ ବନ୍ଦୋବସ୍ତ ପ୍ରଜାମାନଙ୍କ ସଙ୍ଗେ ହେଉଥିବାରୁ ରାଜା ଓ ରାଜକର୍ମଚାରୀମାନେ ପ୍ରଜାମାନଙ୍କର ସାକ୍ଷାତ ସମ୍ପର୍କରେ ଆସି ସେମାନଙ୍କର ଅଭାବଅଭିଯୋଗ ସହଜରେ ବୁଝି ପାରୁଥିଲେ । ମାତ୍ର ଇଂରେଜ ଶାସନରେ ବନ୍ଦୋବସ୍ତ ଜମିଦାରମାନଙ୍କ ସଙ୍ଗେ ହେଲା । ଜମିଦାରମାନେ ରାଜସ୍ୱ ଆଦାୟ ନିମନ୍ତେ ଦାୟୀ ରହିଲେ । ପୁଣି ଜମିଦାରମାନଙ୍କ ସଙ୍ଗେ ବନ୍ଦୋବସ୍ତ ହୋଇ ଘନ ଘନ ଜମାବୃଦ୍ଧି ହେବାରୁ ଆଦାୟର ସମସ୍ତ କଠୋରତା ସତ୍ତ୍ୱେ ବହୁତ ରାଜସ୍ୱ ଅନାଦାୟ ରହିଲା । ସୁତରାଂ ଅନାଦାୟ ରାଜସ୍ୱ ସକାଶେ ବଙ୍ଗ ଆଇନ ଅନୁସାରେ ଓଡ଼ିଶାର ଜମିଦାରୀମାନ ନିଲାମରେ ଉଠିଲା । ୧୮୦୬ ରେ ସେହି ନିଲାମ ପ୍ରଥା ପ୍ରଥମେ ସୃଷ୍ଟି ହେଲା । ନିଲାମ ଓଡ଼ିଶାରେ ନ ହୋଇ କଲିକତାରେ ହେଉଥିଲା । କଲିକତାର ବଙ୍ଗାଳିମାନେ ଏହି ସୁବିଧା ପାଇ ଓଡ଼ିଶାର ବଡ ବଡ଼ ଜମିଦାରୀମାନ ଅଳ୍ପ ମୂଲ୍ୟରେ ହସ୍ତଗତ କରି ନେଉଥିଲେ । ୧୮୦୬ ଠାରୁ ୧୮୧୬ ଏହି ଦଶବର୍ଷ ମଧ୍ୟରେ ଓଡ଼ିଶାର ୩ ଜିଲ୍ଲାରୁ ( କଟକ, ପୁରୀ, ବାଲେଶ୍ୱର ) ୧୦୧୧ ଟି ଜମିଦାରୀ ନିଲାମ ହୋଇଥିଲା ଏବଂ ଏଥିରୁ ୩୫୦ ଟି ବିଦେଶୀ ବଙ୍ଗୀୟମାନେ ଖରିଦ କରି ନେଇଥିଲେ । ନିମ୍ନ ଉଦ୍ଧୃତାଂଶରୁ ଏହି ନିଲାମ ଓ ତାର ପରିଣତି କଥା ସହଜେ ବୁଝିହେବ ।

'There is a considerable sprinkling of Bengalis among the official and landed classes. This eliment is stedily on the increase. It has already purchaged many valuable estates, and monopolized almost all the offices of trust in the administration. Some of the richest Bengali landholders are absentees. They live in Calcutta, and soldom or never visit their estates. But a large number of Bengalis among the official classes and smaller proprietors have gradually settled down in Puri District and consider themselves naturalized in it."

ଏହା ଫଳରେ ଓଡ଼ିଶାର ବହୁ ପ୍ରାଚୀନ ସଂମ୍ଭ୍ରାନ୍ତ ପରିବାର ଧ୍ୱଂସ ହୋଇଗଲେ ଏବଂ ସେମାନଙ୍କ ସ୍ଥାନରେ ବହୁ ବିଦେଶୀ ବଙ୍ଗାଳୀ ଲୋକେ

ଜମିଦାର ହୋଇ ବସିଲେ । ସେମାନେ ସ୍ୱଦେଶରେ ରହୁଥିବାରୁ ଦୂରସ୍ଥ ସ୍ୱଳ୍ପ ବେତନଭୋଗୀ କର୍ମଚାରୀଙ୍କ ଦ୍ୱାରା ରାଜସ୍ୱ ଆଦାୟ କରୁଥିଲେ । ଏଥିରେ ପୁଣି କଉଡ଼ି ବଦଳରେ ଟଙ୍କାରେ ରାଜସ୍ୱ ଦେବାକୁ ସରକାରଙ୍କର ଆଦେଶ ହେବାରୁ ରାଜସ୍ୱ ଏକ ଟଙ୍କା ସ୍ଥଳେ ପ୍ରଜାମାନଙ୍କୁ ଦେଢ଼ ଟଙ୍କା ଦେବାକୁ ପଡ଼ୁଥିଲା ।

ଏହିସବୁ ବନ୍ଦୋବସ୍ତରେ ଖୋର୍ଦ୍ଧାର ଦଳବେହେରା, ଦଳେଇ ଓ ପାଇକ ସମେତ ୮୬୩ ଜଣଙ୍କର ଜାଗିର ଜମି ସରକାର କାଢ଼ିନେଲେ ଏବଂ ତଦ୍ୱାରା ୩୨୪ ବାଟି ନିଷ୍କର ଭୂମିର ଦଖଲକାରୀ ବ୍ୟକ୍ତି ବାସଚ୍ୟୁତ ହେଲେ ।

ଜାଏଗିର କାଢ଼ିନେବା ପରେ ମଧ୍ୟ ସେତେବେଳେ ପୁରୀ ଜିଲାରେ ଥିବା ୨୭୭୮୦ଟି ପାଇକ ଜାଏଗିର ମଧ୍ୟରୁ ବହୁ ଜାଏଗିର ଖାରଜ କରିଦେଇ ବାକି ଗୁଡ଼ିକରେ ଜମାଧାର୍ଯ୍ୟ ହେଲା ।

ଏହା ସାଙ୍ଗକୁ ମୋଗଲ, ମରହଟ୍ଟା ରାଜତ୍ୱରେ ସବୁ ବ୍ୟବସାୟ ବାଣିଜ୍ୟ ମୃତପ୍ରାୟ ଅବସ୍ଥା ଲଭିଥିଲା ।

ଲୁଣ ବ୍ୟବସାୟ ଚିଲିକା ଉପକୂଳ ଖୋର୍ଦ୍ଧାବାସୀ ତଥା ଓଡ଼ିଶା ବାସୀଙ୍କ ପ୍ରଧାନ ଜୀବିକା ଥିଲା । ଇଂରେଜ ରାଜତ୍ୱର ପ୍ରଥମାବସ୍ଥାରେ ହଜାର ହଜାର ଉପକୂଳବାସୀ ଲୁଣ ମାରି ଜୀବିକା ଅର୍ଜନ କରୁଥିଲେ । ଏହି ଲୁଣ ମଧ୍ୟ ନିଜ ନିଜ ଅଞ୍ଚଳର ଅଭାବ ପୂରଣ କରି ବାହାରକୁ ରପ୍ତାନି ହେଉଥିଲା ଏବଂ ଓଡ଼ିଶାର ଲୁଣ ସର୍ବାପେକ୍ଷା ଉତ୍କୃଷ୍ଟ ବୋଲି ଭାରତରେ ବିବେଚିତ ହେଉଥିଲା ।

ଓଡ଼ିଶା ଅଧିକାର କରିବା ସଙ୍ଗେ ସଙ୍ଗେ ଇଷ୍ଟଇଣ୍ଡିଆ କମ୍ପାନୀ ଲୁଣ ମହାଲରେ ଏକଚାଟିଆ ନୀତି ଧରି ନିଜ କାରବାର ଚଳାଇଲେ । ଏପରିକି ସେତେବେଳେ ଲୁଣ ମହାଲରେ ମହଣ ପ୍ରତି ୪ ଅଣା ମାତ୍ର ଖର୍ଚ୍ଚ ହେଉଥିବା ସ୍ଥଳେ ତାହା ବାହାରେ ୩ ଟଙ୍କା ୧୨ ଅଣାରେ ବିକ୍ରି ହେଉଥିଲା । ସରକାର ଏହି ଲୁଣ ମହଣକ ଉପରେ ୩ ଟଙ୍କା ୪ ଅଣା କର ବସାଇଲେ । ଏହା ଫଳରେ ବହୁଲୋକ ହାତ ବାନ୍ଧି ବସିଲେ । (୧)

(୧) ଓଡ଼ିଶା ଇତିହାସ — ଡଃ ମହତାବ ।

ଇଂଲଣ୍ଡରୁ ଲୁଣ ଆସି ଅଳ୍ପ ଦାମରେ ବିକ୍ରି ହେଲା ଏବଂ ତନ୍ତଲୁଗା ପରିବର୍ତ୍ତେ କଳଲୁଗା ପ୍ରବେଶ କରି ଲୁଗା ବ୍ୟବସାୟ ଅଚଳ ଅବସ୍ଥାପ୍ରାପ୍ତ ହେଲା । ଏହିପରି କରଭାର ଓ ନାନା ଅତ୍ୟାଚାରରେ ଉତ୍ତକ୍ତ ହୋଇ ଖୋର୍ଦ୍ଧା ଅଞ୍ଚଳର ପ୍ରାୟ ୫୬ ହଜାର ଚାଷୀ ପାଖଆଖ ଗଡ଼ଜାତକୁ ପଳାଇ ଯାଇଥିଲେ ବୋଲି ଏଉଆରଙ୍କ (Ewer's Report) ରିପୋର୍ଟରୁ ଜଣାଯାଏ ।

ଖୋରଧାରେ ମେଜର ଫ୍ଲେଚରଙ୍କ ନେତୃତ୍ୱରେ ସରକାରୀ କୋଠାଘର ତୋଳା ହେବାଠାରୁ ଖୋର୍ଦ୍ଧାର ବିଭିନ୍ନ ସ୍ଥାନରେ ପୋଲିସ ଫାଣ୍ଡି ଓ ପୋଲିସ ଶାସନ ଜରିଆରେ ଅତ୍ୟାଚାର ଚଳାଇବାରେ ଖୋରଧାସଂସ୍ର ଭୀଷଣ ପରିବର୍ତ୍ତନମାନ ଘଟିଗଲା । "ତାର କି ରାଜନୀତି, କି ଅର୍ଥନୀତି, କି ସାମାଜିକ, ସକଳ ପ୍ରକାର ଜୀବନର ପ୍ରତ୍ୟେକ ବିଭାଗରେ, ଗୋଟିଏ ପ୍ରଳୟ ଆସି ପହଞ୍ଚିଗଲା । ଯାହା କେବେ କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ, ଆଖି ଆଗରେ ଘଟିଗଲା, ରାଜା ମୁକୁନ୍ଦ ଦେବ ବନ୍ଦୀ ହେଲେ । ଦୁଇ ବର୍ଷ ପରେ ଅବଶ୍ୟ ବନ୍ଦୀଶାଳାରୁ ମୁକ୍ତି ପାଇଲେ କିନ୍ତୁ ନିଜର ରାଜ୍ୟଚ୍ୟୁତ, ପୁରୀ ସହରରେ ଯାଇ ରହିବାକୁ ତାଙ୍କୁ ମଧ୍ୟ ବାଧ୍ୟ କରାଗଲା । ଲୋକେ ଧରିନେଲେ ଯେ ଚଳନ୍ତି ବିଷ୍ଣୁଙ୍କ ଶ୍ରୀଅଙ୍ଗରେ ଘାଉଡ଼ ହେଲା । ତା ଫଳରେ ନୈତିକ ମେରୁଦଣ୍ଡ ଭାଙ୍ଗି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା ।

ଅଥଚ ମୁକୁନ୍ଦଦେବ ଯେତେ ଅପଦାର୍ଥ ହେଲେ ମଧ୍ୟ, ଲୋକେ ନିଜର ପାରମ୍ପରିକ ରାଜାଙ୍କୁ ହୃଦୟରୁ ଫିଙ୍ଗି ଦେଇ, ସେ ଆସନରେ ଇଂରେଜ ଶାସନକର୍ତ୍ତା ଫ୍ଲେଚରଙ୍କୁ ବସାଇ ପାରିଲେ ନାହିଁ । ଅଶାନ୍ତ ଅରାଜକତାର ନିଆଁ ଭିତରେ ଭିତରେ କୁହୁଳିବାକୁ ଲାଗିଲା । ତାହା କେତେବେଳେ କେଉଁଠାରେ କେଉଁ ଆକାରରେ ପ୍ରକାଶ ପାଇଲା ।" ସର୍ବଶେଷରେ ଏହି ଚରମ ନିର୍ଯାତନାର ଫଳ ଘୋର ଏକ ବିଦ୍ରୋହକୁ ସରକାରର ବିରୁଦ୍ଧରେ ଡାକି ଆଣିଲା । ଏହିପରି ନିର୍ଯାତିତ ଅବସ୍ଥାରେ ଲୋକେ ଖୋଜୁଥିଲେ ଜଣେ ନେତା । ଯାହାଙ୍କ ନେତୃତ୍ୱରେ ଇଂରେଜ ରାଜତ୍ୱକୁ ଖୋର୍ଦ୍ଧା ଭୂଇଁରୁ ହଟାଇ ଦେଇ ହେବ ।

ଏହି ଆବଶ୍ୟକତା ମେଣ୍ଟାଇବା ପାଇଁ ନେତା ମିଳିଗଲେ । ସେ ହେଉଛନ୍ତି ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ।

ବକ୍ସି ଜଗବନ୍ଧୁ ହେଉଛନ୍ତି ଜାତିରେ ଖଣ୍ଡାୟତ କ୍ଷତ୍ରିୟ । ପୁରୁଷାନୁକ୍ରମରେ ବିଦ୍ୟାଧର ଭ୍ରମରବର ବଂଶ ଖୋର୍ଦ୍ଧା ରାଜାଙ୍କର ବକ୍ସି ଅର୍ଥାତ୍ ସେନାପତି ଥିଲେ ।

ମରହଟ୍ଟା ଶାସନ କାଳରେ ବକ୍ସି ରୋଡ଼ଙ୍ଗର ମାଲିକ ଥିଲେ । ଏହି ରୋଡ଼ଙ୍ଗ ଜାଏଗିର ହେଉଛି ଖୋରଧା ରାଜାଙ୍କ ଦ୍ୱାରା ପ୍ରଦତ୍ତ । ମରହଟ୍ଟାମାନଙ୍କ ଦ୍ୱାରା ଏହା ବକ୍ସିଙ୍କର ଜାଏଗିର ରୂପେ ସ୍ୱୀକୃତ ହୋଇଥିଲା ଏବଂ ୧୮୦୩ ରେ ଇଷ୍ଟ ଇଣ୍ଡିଆ କମ୍ପାନିସରକାରଙ୍କ ବନ୍ଦୋବସ୍ତ ବେଳେ ମଧ୍ୟ କମ୍ପାନି ସେନାପତି କର୍ଣ୍ଣେଲ ହାରକୋର୍ଟ ଏକ-ବର୍ଷ ପାଇଁ ରୋଡ଼ଙ୍ଗ କିଲାର ବନ୍ଦୋବସ୍ତ ବକ୍ସି ଜଗବନ୍ଧୁଙ୍କ ସହିତ କରିଥିଲେ । ୧୮୦୪ ରେ ୩ ବର୍ଷ ପାଇଁ କଲେକ୍ଟର ଉଏବ୍ ମଧ୍ୟ ବନ୍ଦୋବସ୍ତ କରି ବକ୍ସିଙ୍କୁ ପଟ୍ଟା ଦେଇଥିଲେ ।

ଉଏବ୍ ସାହେବ କଲେକ୍ଟର ଥିବାବେଳେ ତାଙ୍କ ଅଫିସରେ ସୁପରିନ୍‌ଟେଣ୍ଡେଣ୍ଟ ଭାବେ ଥିଲେ ବଙ୍ଗଦେଶ ପାଇକପଡ଼ାର ଜଣେ କାୟସ୍ଥ କୃଷ୍ଣଚନ୍ଦ୍ର ସିଂହ । ଏହି ଚାକିରିରେ ନିଯୁକ୍ତ ଥିବା ବ୍ୟକ୍ତିଙ୍କୁ ସେତେବେଳେ ଦେବାନ ବୋଲି କୁହାଯାଉଥିଲା ।

ସେତେବେଳେ ବଙ୍ଗଳାର ବହୁ ଶିକ୍ଷିତ ଲୋକେ କଲେକ୍ଟର, କମିସନର ଓ ଅନ୍ୟାନ୍ୟ ଅଫିସରେ କର୍ମଚାରୀ ଥିଲେ । ବଙ୍ଗ ସରକାରଙ୍କ ଅଧୀନରେ ସେତେବେଳେ ଓଡ଼ିଶା ଥିଲା ଏବଂ ସରକାରୀ ଅଫିସମାନଙ୍କରେ ଫାର୍ସି, ଇଂରେଜି ଓ ବଙ୍ଗଳା ଭାଷା ଚଳୁଥିଲା । ତେଣୁ ଓଡ଼ିଶା ଲୋକେ ଚାକିରିର ବିଶେଷ ସୁଯୋଗ ପାଉନଥିଲେ । ବଙ୍ଗାଳୀ ଅଫିସରମାନେ ଜାଏଗିର, ଜମିଦାରୀ ସବୁ ନିଲାମରେ ଉଠାଇ କରାୟତ୍ତ କରିବା ପାଇଁ ନାନା ଫନ୍ଦି କରୁଥିଲେ ।

ପୂର୍ବେ ମରହଟ୍ଟାମାନେ ଖୋର୍ଦ୍ଧା ରାଜାଙ୍କଠାରୁ କେତେକ ଅଞ୍ଚଳ ଛଡ଼ାଇ ନେଇ ଖାସ କରିଥିଲେ । ଇଂରେଜମାନେ ଚୁକ୍ତି ସୂତ୍ରରେ ଏହି

ଅଞ୍ଚଳ ପାଇବା ପରେ ସେଥିରୁ କେତେକ ଅଞ୍ଚଳ ବନ୍ଦି କରି ଦେବାକୁ ସ୍ଥିର କଲେ । ସେହି ଅଞ୍ଚଳସବୁ କଣି ନେବାକୁ ଦେବାନ କୃଷ୍ଣଚନ୍ଦ୍ରଙ୍କ ପାଟିରୁ ଲାଳ ବହିଲା ।

୧୮୦୫ ରେ ଉଏବ୍ ସାହେବ କଲେକ୍ଟର ହେବାପରେ କୃଷ୍ଣଚନ୍ଦ୍ର ଚାକରୀ ଛାଡ଼ିଦେଇ କଟକରେ ରହିଲେ ଏବଂ ତାଙ୍କ ଭାଇ ଗୌରହରି ସିଂହ ପୁରୀ ଜିଲ୍ଲାର କେତେକ ଖାସମାହାଲ ଅଞ୍ଚଳର ଖଜଣା ଅସୁଲ କରିବାପାଇଁ ସରକାରୀ ତହସିଲଦାର ନିଯୁକ୍ତ ହେଲେ ।

ଗୌରହରି ସିଂହ ରହାଙ୍ଗ ପ୍ରଭୃତି ଅଞ୍ଚଳରୁ ଖଜଣା ଅସୁଲ କରୁଥିଲାବେଳେ କୃଷ୍ଣଚନ୍ଦ୍ରଙ୍କ ପରାମର୍ଶରେ 'ରହାଙ୍ଗ ଓଗେର' ତଳେ ଖଜଣା ସବୁ ଅସୁଲ ହେଲେ । ଫସଲି ବର୍ଷ ୧୨୧୫ ରେ ରହାଙ୍ଗ ଓଗେର ଅଞ୍ଚଳକୁ କୃଷ୍ଣଚନ୍ଦ୍ରଙ୍କ ଆତ୍ମୀୟ ଲକ୍ଷ୍ମୀନାରାୟଣଙ୍କ ନାମରେ ଖଜଣା ଆଦାୟ କରିବା ପାଇଁ ଠିକା ଦିଆଗଲା ।

ଯେତେବେଳେ ଫସଲି ୧୨୧୬ର ବର୍ଷ ଶେଷକୁ ରହାଙ୍ଗ ପ୍ରଗଣାକୁ ସରକାର ବନ୍ଦି କରିବାକୁ ଘୋଷଣା କଲେ, ସେତେବେଳେ କୃଷ୍ଣଚନ୍ଦ୍ର ଏହା କଣି ନେଲେ । କଣି ନେବା ପରେ ରେଢ଼ଙ୍ଗ ଅଞ୍ଚଳକୁ ଦଖଲ କରିବା ପାଇଁ କୃଷ୍ଣଚନ୍ଦ୍ର ଚେଷ୍ଟା କଲେ । ଏହା କରିବା ପାଇଁ ତାଙ୍କ ଭାଇ ଗୌରହରିଙ୍କ ଜରିଆରେ ସେ ଖଜଣା ଅସୁଲ କରି 'ରହାଙ୍ଗ ଓଗେର' ତଳେ ଜମା ଦେଉଥିଲେ । ଅନାଏ ଜବରଦସ୍ତ ରେଢ଼ଙ୍ଗ କଲା ଦଖଲ କରିନେବାକୁ ବସିବାରୁ ବକ୍ସି ଓ ସିଂହଙ୍କ ଲୋକଙ୍କ ମଧ୍ୟରେ ମାରପିଟ ହେଲା । ସିଂହ ତାହା ଦଖଲ କରି ନେଇ ପାରିଲେ ନାହିଁ ।

ଏହାପରେ ଉଭୟଙ୍କ ପକ୍ଷରୁ ଏହି ବିଷୟ ନେଇ ସରକାରଙ୍କ ପାଖରେ ଆପତ୍ତି ଦରଖାସ୍ତ ହେଲା । କମିସନର ବୁଲେର ସାହେବଙ୍କ ପାଖେ ବହୁଦିନ ଦରଖାସ୍ତ ପଡ଼ି ରହିଲା । ବକ୍ସି ଯେଉଁ ପଟ୍ଟା ପାଇଥିଲେ ତାର ମିଆଦ ନ ପୂରିଥିବାରୁ ଜମିକୁ ରସୂତ ଲଗାଇଦେଲେ । ତା'ପରେ ଜଗବନ୍ଧୁ ଓ ତାଙ୍କ ପୁତୁରାଙ୍କ ମଧ୍ୟରେ ଜାଗିର ବଣ୍ଟନ ସମ୍ପର୍କରେ ବିବାଦ ଉପସ୍ଥିତ ହୋଇ ଦଶ'ଣା ଛ'ଣାରେ ବଣ୍ଟନ ସ୍ଥିର ହେଲା ।

କୃଷ୍ଣଚନ୍ଦ୍ର କଣିକେର ଥିବାରୁ ଏହି ଗେଡ଼ଙ୍ଗ ଅଞ୍ଚଳକୁ ତାଙ୍କର ସଞ୍ଚାରେ ଲଗାଇପାରିବାର ଅଧିକାର ଅଛି ବୋଲି ଦାବି କରି କୃଷ୍ଣଚନ୍ଦ୍ର ପୁଣି ଆପତ୍ତି ଜଣାଇଲେ । ଏହା ବିରୁଦ୍ଧରେ ଜଗବନ୍ଧୁ ପୁଣି ଆପତ୍ତି ଜଣାଇଲେ । ଏହି ଦରଖାସ୍ତର ବିଚାରରେ ସରକାରୀ ହାକିମ ନିଷ୍ପତ୍ତି ଦେଲେ ଯେ ରହାଙ୍ଗ ଅଞ୍ଚଳରେ ଗେଡ଼ଙ୍ଗକୁ ସାମିଲ କରିବା ଠିକ୍ ହୋଇ ନାହିଁ । ତେଣୁ ସେ ଅଞ୍ଚଳକୁ ରହାଙ୍ଗରୁ ଅଲଗା କରାଯାଉ ।

ଏହି ସିଦ୍ଧାନ୍ତ କାର୍ଯ୍ୟକାରୀ ହେଲା ନାହିଁ । ଓଲଟି କୃଷ୍ଣଚନ୍ଦ୍ର ଚହାନ୍ତ କରି ସରକାରଙ୍କୁ ଜଣାଇଲେ ଯେ ଗେଡ଼ଙ୍ଗ ପାଇଁ ବକ୍ସି ବଂଶ ଯେଉଁ ଦାବି ଜଣାଉଛନ୍ତି ତାହା ଉପଯୁକ୍ତ ପ୍ରମାଣ ଦ୍ୱାରା ସମର୍ଥିତ ନୁହେଁ । ଏହି ଘଟଣା ପରେ ସରକାର ଜଣାଇଲେ ଯେ ଜଗବନ୍ଧୁ, ଗେଡ଼ଙ୍ଗ ତାଙ୍କର ବୋଲି ଉଚିତ ଅଦାଲତରେ ଦାବି ସାବ୍ୟସ୍ତ କରନ୍ତୁ ।

ସରକାରଙ୍କର ଏହି ନୂଆ ଅନ୍ୟାୟ ନିଷ୍ପତ୍ତିରେ ଜଗବନ୍ଧୁ ହତାଶ ହୋଇ ପଡ଼ିଲେ । ତାଙ୍କ ଆର୍ଥିକ ଅବସ୍ଥା ଏସବୁ କରିବା ପାଇଁ ସ୍ୱଚ୍ଛଳ ନଥିଲା । ତେଣୁ ସେ ବନ୍ଧୁ ବାନ୍ଧବଙ୍କର ସାହାଯ୍ୟ ଲୋଡ଼ିଲେ । ହାକିମ, ହୁକୁମା, କଚେରୀ ପ୍ରଭୃତିକୁ ଦଉଡ଼ ଦଉଡ଼ ସେ ସର୍ବସ୍ୱାନ୍ତ ହୋଇପଡ଼ିଲେ । ସମ୍ଭ୍ରାନ୍ତ ଭାବେ ଚଳିବା ତାଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ଯେଉଁ ପାଇକମାନଙ୍କର ସେ ବକ୍ସି ଥିଲେ ତାଙ୍କର ସାହାଯ୍ୟ ଓ ସହାୟତାରେ ସେ ନିକଟସ୍ଥ ଗଡ଼ଜାତ ଓ ଜମିଦାରମାନଙ୍କ ନିକଟକୁ ଯାଇ ଆର୍ଥିକ ସାହାଯ୍ୟ ଲୋଡ଼ିଲେ । ବିଭିନ୍ନ ଗ୍ରାମର ଜନସାଧାରଣ ତାଙ୍କୁ ସାହାଯ୍ୟ କରିବାପାଇଁ ଗାଁଏ ଗାଁଏ ସାମୂହିକ ଚାନ୍ଦା ଆଦାୟ କରି ଦେଉଥିଲେ । ଏସବୁ ସତ୍ତ୍ୱେ ଜଗବନ୍ଧୁଙ୍କର ନ୍ୟାୟ ପାଇବାର ଆଶା ତୁଟି ଯାଇଥିଲା । କାରଣ ତଳକୋର୍ଟ ପରେ କଲିକତାର ଉଚ୍ଚତମ ବିଚାରାଳୟ ପର୍ଯ୍ୟନ୍ତ ମକଦ୍ଦମା ଯାଇପାରେ । ତା'ପରେ କୃଷ୍ଣଚନ୍ଦ୍ର କଲିକତାବାସୀ ଥିବାରୁ ତାଙ୍କ ପକ୍ଷରେ ଏସବୁ ସୁବିଧା ଥିଲା । ଶେଷରେ ସେ ଦେଖିଲେ ଯେ ମକଦ୍ଦମାରେ ଲଢ଼ି ସର୍ବସ୍ୱାନ୍ତ ହୋଇ ଦୁଃଖ ଓ ଅପମାନଜନକ ଜୀବନ ଯାପନ କରିବା ତାଙ୍କ ପକ୍ଷରେ ଦୁଷ୍କର । ତେଣୁ ସେ ସ୍ଥିର କରିଦେଲେ ଯେ ବ୍ରିଟିଶ ଶାସନ ଏ ଦେଶରୁ ଲୋପ ନ ହେଲେ ନ୍ୟାୟ ପ୍ରତିଷ୍ଠା ଅସମ୍ଭବ । ଏହି ମକଦ୍ଦମା ସମ୍ପର୍କରେ ତତ୍କାଳୀନ ଜଣେ ଇଂରେଜ ହାକିମ ଓ

ଐତିହାସିକ ଟଏନବୀଙ୍କ ମତ ଏଠାରେ ଉଦ୍ଧାର କଲେ ବକ୍‌ସିଙ୍କର ମନୋଭାବ ସହଜେ ଧାରଣା କରିହେବ । ସେ ଲେଖିଛନ୍ତି :—
"When advised to institute a suit far the recovery of his estate, he ever evinced the greatest repugnance to do so, pleading his want of means, the degradation of using as a pauper, and the futility of any reference to the court from an Uriya when a rich Bengali was to be the defendent."

କ୍ରମେ ବକ୍‌ସିଙ୍କ ମନରେ ଇଂରେମାନଙ୍କ ପ୍ରତି ଘୃଣାଭାବ ଜାତ ହେଲା ଏବଂ ଏହା ସାଙ୍ଗକୁ ଖୋରଧାର ଅଭ୍ୟନ୍ତରୀଣ ଜନସାଧାରଣଙ୍କ ଅସନ୍ତୋଷ ବୃଦ୍ଧି ଲାଭ କରୁଥିଲା ।

ଏହି ସମୟରେ ଘୁମୁସର ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଥିଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଇଂରେଜଙ୍କ ଅଧୀନକୁ ଆସିଥିଲେ ମଧ୍ୟ ଗଞ୍ଜାମ ଓ ଜୟପୁର ଅଞ୍ଚଳ ବହୁ ଆଗରୁ ତାଙ୍କର ଅଧୀନକୁ ଆସିଯାଇଥିଲା । ଇଂରେଜମାନେ ହାଇଦ୍ରାବାଦ ନିଜାମଙ୍କ ଠାରୁ ଗଞ୍ଜାମ ଜିଲ୍ଲା ପାଇଥିଲେ । ସେତେବେଳେ ଗଞ୍ଜାମ ଜିଲ୍ଲା "ଉତ୍ତର ସରକାର" ଭିତରେ ଥିଲା ।

ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାରଙ୍କୁ ଘୁମୁସର ଜମିଦାରୀ ପ୍ରାୟ ୩୦,୦୦୦ ତିରିଶ ହଜାର ଟଙ୍କା ଦେଉଥିଲା । ସରକାର ଖଜଣା ଆଦାୟର ଦାୟିତ୍ୱ ନିଜ ହାତରେ ନ ନେଇ ଜଣେ ଜଣେ ଏଜେଣ୍ଟ ବା ମାନେଜରଙ୍କ ଜରିଆରେ କରୁଥିଲେ । ସେତେବେଳେ ଅସତ୍ କର୍ମଚାରୀଙ୍କ ସଂଖ୍ୟା ଖୁବ୍ ବଢ଼ିଯାଇଥିଲା । ଏଜେଣ୍ଟମାନଙ୍କଠାରୁ ଲାଞ୍ଚ ନେଇ ଜିଲ୍ଲା ହାକିମମାନେ ଜମିଦାରମାନଙ୍କୁ ବଡ଼ ହଇରାଣ କରୁଥିଲେ । ଅନେକ ସମୟରେ ଏଜେଣ୍ଟମାନେ ଖଜଣା ଅସୁଲ କରି ରାଜାଙ୍କ ନାମରେ ଆଦାୟ ନ ଦେଇ ଖଜଣା ବାକି ପଡ଼ିଥିବା ଦେଖାଉଥିଲେ ।

ଏହିସବୁ ଘଟଣାରୁ ଇଂରେଜ ରାଜତ୍ୱର ପ୍ରଥମରୁ ଗଞ୍ଜାମରେ ଜମିଦାରମାନଙ୍କର ନାନାପ୍ରକାର ବିଦ୍ରୋହ ଲାଗି ରହିଥିଲା । ଘୁମୁସରରେ ଆଦିବାସୀଙ୍କ ସଂଖ୍ୟା ବେଶୀ ଥିଲା ଏବଂ ପାହାଡ଼ ଜଙ୍ଗଲ ପୂରି ରହିଥିଲା ।

ମାଳଅଞ୍ଚଳର ଆଦିବାସୀ ସରଦାରମାନେ ନାମକୁମାତ୍ର ରାଜାଙ୍କୁ କର ଦେଇଁ ଗୋଟିଏ ଗୋଟିଏ ମୁଠା (ପରଗଣା) ଭୋଗ କରୁଥିଲେ ଏବଂ ଦରକାର ବେଳେ ରାଜାଙ୍କୁ ପାଇକ ଯୋଗାଉଥିଲେ ।

ଏସବୁ ସୁବିଧା ଇଂରେଜ ସରକାରଙ୍କ ଦ୍ୱାରା କେତେକାଂଶରେ ଅପହୃତ ହେଲା । ଲୋକେ ନାନାରକମ ଦୁଃଖ ଭୋଗିଲେ ଏବଂ ରାଜ୍ୟରେ ନାନାରକମ ଅସତ୍ବୃତ୍ତି ଲୋକେ ଅବଲମ୍ବନ କରିବାକୁ ଲାଗିଲେ ।

ଏହିପରି ଅବସ୍ଥା ମଧ୍ୟରେ ୧୮୧୭ ମାର୍ଚ୍ଚ ମାସରେ ଘୁମୁସରରୁ ପ୍ରାୟ ୪୦୦ କନ୍ଧ ମେଳବାନ୍ଧି ଲୁଟପାଟ କରିବା ଉଦ୍ଦେଶ୍ୟରେ ଖୋର୍ଦ୍ଧା ଅଞ୍ଚଳ ମଧ୍ୟକୁ ପ୍ରବେଶ କଲେ । ଏହି ସମୟକୁ ଖୋରଧାର ଦଳବେହେରା, ଦଳେଇମାନେ ନିଜ ନିଜର ଜାଏଗିର ପ୍ରଭୃତି ବ୍ୟାଜାପ୍ତ, ବନ୍ଦୋବସ୍ତରେ ଲାଞ୍ଚ ମିଛ ଓ ନିଷ୍କର ଜାଏଗିର ଉପରେ କରଧାର୍ଯ୍ୟ ଏବଂ କଉଡ଼ି ବଦଳରେ ଟଙ୍କାରେ କର ଆଦାୟ ଏବଂ ଋଣ ବ୍ୟବସାୟରେ ଇଂରେଜଙ୍କର ଏକଚୁଟିଆ କାରବାର ପ୍ରଭୃତିରେ ଇଂରେଜଙ୍କ ଉପରେ ଅସନ୍ତୁଷ୍ଟ ଥିଲେ; ଏହି କନ୍ଧମାନଙ୍କ ଲୁଟପାଟ ସେମାନଙ୍କୁ ସୁଯୋଗ ଆଣିଦେଲା । ସେମାନେ ବିଚାରିଲେ ଏହି ସୁଯୋଗରେ ବିଦ୍ରୋହ ଆରମ୍ଭ କରି ଇଂରେଜଙ୍କୁ ଖୋରଧା ରାଜ୍ୟରୁ ହଟାଇ ଦେବ ।

ତେଣେ ବକ୍‌ସି ଜଗବଂଧୁ ଏହି ସୁଯୋଗରେ ଖୋରଧା, ବାଣପୁର, ଓ ଲେମ୍ବାଇ ପ୍ରଭୃତି ଅଞ୍ଚଳରେ ପାଇକମାନଙ୍କୁ ସଂଗଠିତ କରିବାପାଇଁ ସଂଗଠନକାରୀମାନଙ୍କୁ ପ୍ରେରଣ କଲେ ।

ବିଦ୍ରୋହୀମାନେ ପ୍ରଥମେ ବାଣପୁର ଆଡ଼କୁ ଅଗ୍ରସର ହୋଇ ଥାନା ଉପରେ ଆକ୍ରମଣ କରି ଧ୍ୱଂସ କରିଦେଲେ ଏବଂ ଅନ୍ୟାନ୍ୟ ସରକାରୀ କୋଠାବାଡ଼ି ଧ୍ୱଂସକରି ସରକାରୀ ଖଜଣାଖାନା ଲୁଟ କରି ପ୍ରାୟ ୧୫୦୦୦୲ ପନ୍ଦର ହଜାର ଟଙ୍କା ନେଇ ଗଲେ । ଦାରୋଗା, ସିପାହୀମାନେ ପ୍ରାଣରକ୍ଷା ପାଇଁ କଏ କେଉଁଆଡ଼େ ପଳାଇଗଲେ ।

ଏହା ପରେ ପରେ, ଲୁଣମରା ଏଜେଣ୍ଟ ବେଚର୍ ସାହେବଙ୍କୁ ଧରିବାପାଇଁ ଚିଲିକାକୂଳ ଆଡ଼େ ଗତି କଲେ । ସେ ଖସି ପଳାଇବାରୁ

ତାଙ୍କ ଉଗାଟି ବିଦ୍ରୋହୀମାନଙ୍କର ହସ୍ତଗତ ହେଲା । ବାଣପୁରରେ ବିଦ୍ରୋହୀମାନେ ସଫଳ ହୋଇଥିବାରୁ ବିଶେଷ ଉତ୍ସାହ ହୋଇ ଖୋର୍ଦ୍ଧା ମୁହାଁଇଲେ । ବାଟରେ ଏହି ବିଦ୍ରୋହୀଙ୍କ ସଂଖ୍ୟା ବେଳୁବେଳ ବୃଦ୍ଧି ପାଇଲା । ଏହି ଖବର ପାଇ ଖୋରଧାରେ ଥିବା ସରକାରୀ ହାକମମାନେ ଜୀବନରକ୍ଷା କରିବାକୁ ଖୋରଧା ଛାଡ଼ି ଚାଲିଗଲେ । କେତେଜଣ କଟକ ଚାଲିଗଲେ । ଏହି ବିଦ୍ରୋହ ଏପରି ଆକାର ଧାରଣ କରିଥିଲା ଯେ ଜଣେ ଇଂରେଜ ଅଫିସର ଲେଖିଛନ୍ତି:—

"Their success at Banpur had set the whole country in arms against us, and seeing the hope lessness of registance, the whole of the Govt. officers stationed at Khurda sought safely in a precipitate flight."

ଅର୍ଥାତ ବାଣପୁରରେ ବିଦ୍ରୋହୀମାନଙ୍କର ଜୟଲାଭ ସମଗ୍ର ଦେଶକୁ ଆମମାନଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେବାରେ ସମର୍ଥ କରାଇ ଦେଲା । ପ୍ରତିରୋଧର କୌଣସି ସମ୍ଭାବନା ନ ଦେଖି ଖୋର୍ଦ୍ଧାର ଅଫିସର-ମାନେ ନିରାପଦ ସ୍ଥାନକୁ ଚାଲିଗଲେ । ସରକାରୀ ଅଫିସରମାନେ ଖୋରଧା ଛାଡ଼ି ଚାଲିଯିବାରୁ ବିଦ୍ରୋହୀମାନେ ଖୋରଧାରେ ଥିବା ସରକାରୀ କୋଠାବାଡ଼ି ଧ୍ୱଂସ କରିଦେଲେ ଏବଂ ଖଜଣାଖାନା ଲୁଟିକରି ନେଲେ । ଏହି ବିଦ୍ରୋହୀମାନଙ୍କ ମଧ୍ୟରୁ ଦଳେ ଲେମ୍ବେଇ ଅଞ୍ଚଳରେ ପଶି ଚରଣ ପଟ୍ଟନାୟକଙ୍କୁ ହତ୍ୟାକଲେ । ଚରଣ ପଟ୍ଟନାୟକ ଜଣେ ସରକାରୀ କର୍ମଚାରୀ ଥିଲେ ଏବଂ ସେ ଏହି ମେଳର ଗୁପ୍ତ ଖବର ସରକାରଙ୍କୁ ଜଣାଉଥିଲେ ।

ଏହି ମେଳ ଖବର କଟକରେ ପହଁଞ୍ଚିବାରେ ଏହାକୁ ଦମନ କରିବାପାଇଁ ମାର୍ଚ୍ଚ ମାସର ଶେଷ ଆଡ଼କୁ ବହୁ ସଂଖ୍ୟାରେ ସିପାହୀ ଧରି ୩ ଜଣ ସେନାଧ୍ୟକ୍ଷ ଲେଫଟେନାଣ୍ଟ ପ୍ରାଇଡ଼ (Prideaux) ଖୋରଧା ଆଡ଼କୁ, ଲେଫ୍‌ଟେନାଣ୍ଟ ଫେରିସ ପିପିଲି ଆଡ଼କୁ ଏବଂ କାପ୍‌ଟେନ ଓ୍ୱେଲିଙ୍ଗଟନ ପୁରୀ ଆଡ଼କୁ ଅଗ୍ରସର ହେଲେ ।

କଟକ ଜିଲ୍ଲା ମାଜିଷ୍ଟ୍ରେଟ ଇର୍ମି ସାହେବ ନିଜେ ଘଟଣା ସ୍ଥଳରେ ଉପସ୍ଥିତ ରହିବା ପାଇଁ ଲେଫ୍‌ଟେନାଣ୍ଟ ଟ୍ରେବସ୍‌ଙ୍କୁ ସାଙ୍ଗରେ ଧରି ୬୦ ଜଣ

ସିପାହୀଙ୍କ ସହ ଅପ୍ରେଲ ୧ ତାରିଖରେ ଖୋରଧା ଆଡ଼େ ଗତି କଲେ । ତାଙ୍କର ଇଚ୍ଛା ଥିଲା ଯେ ସେ ତାଙ୍କ ପୂର୍ବରୁ ଖୋରଧା ଆଡ଼େ ଯାଇଥିବା ପ୍ରାଇଡ୍‌ଙ୍କ ସାଙ୍ଗେ ମିଶିବେ ।

ଇର୍ମି ସାହେବ ଅପ୍ରେଲ ଦୁଇ ତାରିଖ ଦିନ ଖୋରଧାରୁ ଅଳ୍ପଦୂର ଗଙ୍ଗପଡ଼ା ଗ୍ରାମରେ ପହଞ୍ଚିଥିଲେ । ଏମାନଙ୍କ ଖବର ପୂର୍ବରୁ ପାଇ ବିଦ୍ରୋହୀମାନେ କାଠ, ପଥର, ଡିମା ପକାଇ ରାସ୍ତା ଅବରୋଧ କରିଥିଲେ । ଏମାନେ ପହଞ୍ଚିବା କ୍ଷଣି ବିଦ୍ରୋହୀମାନେ ଗୁଳି ଫୁଟାଇଲେ । ପ୍ରଥମରୁ ଏହି ଗୁଳି ଫାଏର ଦେଖି ଇଂରେଜମାନେ ଆଉ ଆଗକୁ ଅଗ୍ରସର ନ ହୋଇ ରାତିଟି ସେଇଠି କଟାଇବା ସ୍ଥିର କରି ଗଙ୍ଗପଡ଼ା ଠାଙ୍ଗିରେ ଛାଉଣି ପକାଇଲେ । ଅପ୍ରେଲ ୨ ତାରିଖ ଦିନ ଇର୍ମି ସାହେବଙ୍କ ପାଖରେ ଖବର ପହଞ୍ଚିଲା ଯେ ଜଗବନ୍ଧୁଙ୍କ ନେତୃତ୍ୱରେ ଦଳେ ବିଦ୍ରୋହୀ ପାଞ୍ଚଗଡ଼ରେ ରହିଥିବା ସମ୍ବଲପୁରର ରାଣୀ ମୁକ୍ତା ଦେଈଙ୍କ ଘର ଆକ୍ରମଣ କରି ସମସ୍ତ ଲୁଟି ନେଇଛନ୍ତି । କାରଣ ସେ ବ୍ରିଟିଶ ପକ୍ଷରେ ଥିଲେ । ଏହାପରେ ଜଗବନ୍ଧୁ ୫୦୦୦ ବିଦ୍ରୋହୀ ପାଇକଙ୍କୁ ଧରି ପ୍ରାଇଡ଼ଙ୍କୁ ଆକ୍ରମଣ କରିବା ପାଇଁ ଖୋରଧା ଆଡ଼େ ଆସୁଥିବା ଖବର ପ୍ରାଇଡ଼ଙ୍କ ପାଖରେ ପହଞ୍ଚିଲା । ପୂର୍ବରୁ କଟକରୁ କାପଟେନ ଓ୍ୱାଲିଙ୍ଗଟନ (Wallington) ଯେଉଁ ସୈନ୍ୟ ଦଳକୁ ନେଇ ପୁରୀ ଯାଉଥିଲେ, ତାଙ୍କ ସାଙ୍ଗରେ ଥିବା ଲେଫଟେନାଣ୍ଟ ଫେରିସ୍‌ଙ୍କୁ ପିପିଲିରେ ରହିବା ଆଦେଶ ହୋଇଥିଲା । କିନ୍ତୁ ପରେ ତାଙ୍କୁ ଡେଲାଙ୍ଗରେ ରହିବାକୁ ଆଦେଶ ହେଲା । ତାପରେ ଓ୍ୱାଲିଙ୍ଗଟନ ପ୍ରାଇଡ଼ଙ୍କୁ ଦଳେ ସୈନ୍ୟ ନେଇ ଖୋରଧା ଆଡ଼େ ଯାଇ ପ୍ରାଇଡ଼ଙ୍କ ସହ ମିଶିବାକୁ ଆଦେଶ ଦେଇଥିଲେ । ସେ ଅପ୍ରେଲ ୨ ତାରିଖରେ ୫୦ ଜଣ ସୈନ୍ୟଙ୍କୁ ନେଇ ଗଙ୍ଗପଡ଼ା ଠାରେ ପହଞ୍ଚିଲେ । ଗଙ୍ଗପଡ଼ାଠାରେ ପ୍ରାଇଡ଼ ଓ ଫେରିସ ଉଭୟଙ୍କ ଦଳ ପାଇକମାନଙ୍କ ଆକ୍ରମଣରେ ଅସ୍ତ ବ୍ୟସ୍ତ ହୋଇପଡ଼ିଲେ । ଲେଫଟେନାଣ୍ଟ ଫେରିସ ଓ ବହୁ ସୁବାଦାର ସେଠାରେ ପ୍ରାଣ ହରାଇଲେ । ବିପ୍ଳବୀମାନେ ସେମାନଙ୍କ ଠାରୁ ବହୁ ଯୁଦ୍ଧ ସରଞ୍ଜାମ ଓ ଖାଦ୍ୟ ସାମଗ୍ରୀ ଛଡ଼ାଇନେଲେ ।

ଏହି ଘଟଣା ପରେ ପ୍ରାଇଡ଼ ପିପିଲି ବାଟେ କଟକ ପଳାଇଗଲେ । ଏହା ପରେ ପିପିଲି ବିଦ୍ରୋହୀମାନେ ଦଖଲ କରିନେଇ ଥାନା

ପୋଡ଼ିଦେଲେ ଏବଂ ଲୁଟି କରିନେଲେ । ଏସବୁ ଘଟଣା ଇର୍ସି ସାହେବ ଜାଣି ନ ଥିଲେ । ୩ ତାରିଖ ଦିନ ଖୋରଧା ଠାରୁ ଇର୍ସିଙ୍କ ପାଖରେ ଖବର ପହଞ୍ଚିଲା ଯେ ପ୍ରାଇଡ଼ ଖୋରଧାରେ ନାହାନ୍ତି । ଖୋରଧାର ସବୁ କୋଠାବାଡ଼ି ବିଦ୍ରୋହୀମାନେ ପୋଡ଼ି ଧ୍ୱଂସ କରି ଦେଇଛନ୍ତି । ଏ ଖବର ପାଇ ଇର୍ସିଙ୍କ ହୃତ୍‌କମ୍ପ ଜାତ ହେଲା । ସେ ଆଉ ଗଙ୍ଗପଡ଼ା ଠାରେ ନ ରହି ପିପିଲି ଆଡ଼େ ଅଗ୍ରସର ହେଲେ ।

ଏହି ସମୟକୁ ଗଙ୍ଗପଡ଼ା ଠାରେ ବିଦ୍ରୋହୀଙ୍କ ସଂଖ୍ୟା ୩୦୦୦ ହୋଇ ଯାଇଥିଲା । ସେମାନେ ଇଂରେଜ ସୈନ୍ୟଙ୍କ ଉପରେ ଘନ ଘନ ଗୁଳି ବର୍ଷଣ କଲେ । ଏଥିରେ ବ୍ୟତିବ୍ୟସ୍ତ ହୋଇ ଇଂରେଜ ସୈନ୍ୟମାନେ ତାଙ୍କ ଯୁଦ୍ଧ ସାମଗ୍ରୀ ଓ ରସଦ ନେଇ ପାରିଲେ ନାହିଁ । ରାତି ଅନିଦ୍ରା ଓ ଭୋକ ଉପାସରେ ଇଂରେଜ ସୈନ୍ୟମାନେ ଗୁଳି ଗୁଳି ଦିନ ସାଢ଼େ ୩ ଟା ବେଳେ ଭୁବନେଶ୍ୱର ନିକଟରେ ଥିବା ବାଲକାଟି ଗ୍ରାମରେ ପହଞ୍ଚିଲେ । ବାଲକାଟିରେ ୬ ଘଣ୍ଟା ବିଶ୍ରାମ ପରେ ଇର୍ସି ରାତି ସାଢ଼େ ୯ ଟାରେ କଟକ ବାହାରିଲେ । ବାଲକାଟିରୁ ବାହାରିବା କ୍ଷଣି ଦଳେ ପାଇକ ଅନ୍ଧାର ରାତିରେ ସେମାନଙ୍କ ଉପରେ ଆକ୍ରମଣ କରିଥିଲେ । କିନ୍ତୁ ଇର୍ସିଙ୍କ ଦଳ ତୋପ ଫୁଟାଇବାରୁ ବିଦ୍ରୋହୀମାନେ ଛତ୍ରଭଙ୍ଗ ହେଲେ । ଇର୍ସି ଅପ୍ରେଲ ୪ ତାରିଖ ଦିନ ସକାଳେ କଟକରେ ପହଞ୍ଚିଲେ ।

ମାଜିଷ୍ଟ୍ରେଟ ଇର୍ସି ସରକାରଙ୍କୁ ଜଣାଇଲେ, "ଆମ ପଛଘୁଞ୍ଚା ବାଧ୍ୟବାଧକତା ଯୋଗୁ ଘଟିଲା । ସମଗ୍ର ଖୋରଧା ରାଜ୍ୟରେ ମେଳି ଅବସ୍ଥା ରହିଛି ।"

ଏତେବେଳକୁ ବିଦ୍ରୋହୀମାନେ ମୁକୁନ୍ଦ ଦେବଙ୍କୁ ସସମ୍ମାନରେ ପୁରୀରୁ ଆଣି ଖୋରଧା ରାଜ ସିଂହାସନରେ ବସାଇବା ଲକ୍ଷ୍ୟରେ ପାଇକ ଦଳ ପୁରୀ ଅଭିମୁଖରେ ଅଗ୍ରସର ହେଲେ । ଏହି ସମୟରେ ମାଜିଷ୍ଟ୍ରେଟ ଇର୍ସି ସାହେବ ସରକାରଙ୍କୁ ଜଣାଇଲେ ଯେ ପୁରୀ ରାଜାଙ୍କର ବଂଶ-ମର୍ଯ୍ୟାଦା ଓ ଭକ୍ତିପତ୍ତିର ସୁବିଧା ନେଇ ତାଙ୍କ ନାମରେ ବିଦ୍ରୋହ ଚଳାଇବାକୁ ବିଦ୍ରୋହୀମାନେ ଉଦ୍ୟମ ଚଳାଇ ଥିବାରୁ ମୁକୁନ୍ଦ ଦେବଙ୍କୁ ପୁରୀରୁ ବାହାର କରି ଆଣି କଟକରେ ରଖାଯାଉ ଏବଂ ତାଙ୍କର ପ୍ରତ୍ୟେକ ସରଦାରମାନଙ୍କୁ ଯେ ଧରାଇ ଦେବ ତାଙ୍କୁ ପ୍ରତ୍ୟେକ ସରଦାର ପାଇଁ

ଟ ୫୦୦୯ ପୁରସ୍କାର ଘୋଷଣା କରାଯାଉ ଏବଂ ଏହି ଉପଦ୍ରୁତ ଅଞ୍ଚଳରେ ସାମରିକ ଆଇନ ଜାରି ହେଉ । (୧) କଟକରୁ ଯେଉଁ ଦଳ ଓ୍ୟାଲିଙ୍ଗଟନଙ୍କ ନେତୃତ୍ୱରେ ପୁରୀ ଅଭିମୁଖରେ ବାହାରିଥିଲେ ସେମାନେ ବାଲକାଟି, ପିପିଲି, ଡେଲାଙ୍ଗ ବାଟେ ଅପ୍ରେଲ ୨ ତାରିଖରେ ପୁରୀରେ ପହଞ୍ଚିଥିଲେ । ସେତେବେଳକୁ ପୁରୀରେ କିଛି ଗଣ୍ଡଗୋଳ ନ ଥିଲା । କିନ୍ତୁ ସେଠାରେ ଆସନ୍ନ ବିପଦର ଆଶଙ୍କା କରି କାପଟେନ୍ ଓ୍ୟାଲିଙ୍ଗଟନ କଟକରେ ବଡ଼ ସେନାଧ୍ୟକ୍ଷଙ୍କୁ ଦଳେ ଟାଣ୍ଡିଆ ସୈନ୍ୟ ପଠାଇବା ପାଇଁ ଅନୁରୋଧ କରିଥିଲେ । ଏହି ଅନୁରୋଧ ଅନୁସାରେ କଟକରୁ ୯ ତାରିଖ ଦିନ ୫୫୦ (ପାଞ୍ଚଶହ ପଚାଶ) ସିପାହୀ, ତୋପ ଓ ଅନ୍ୟାନ୍ୟ ଯୁଦ୍ଧ ସରଞ୍ଜାମ ସହ କାପ୍ଟେନ ଲିପଞ୍ଚର ଖୋରଧା ଆଡ଼କୁ ଅଗ୍ରସର ହେଲେ ।

୧୮୦୪ ଅପ୍ରେଲ ୧୨ ତାରିଖ ଦିନ ରେଗୁଲେସନ ୧୦ ଅନୁସାରେ ଖୋରଧାରେ ସାମରିକ ଆଇନ ଜାରି ହେଲା । ଏହି ଦିନ ବକ୍ସିଙ୍କ ଦଳବଳ ପୁରୀ ନିକଟରେ ଥିବା ସୁକଳ ଗ୍ରାମରେ ଏକଜ ହେଲେ ଏବଂ ଲୋକନାଥ ଘାଟ ବାଟେ ପୁରୀ ସହରରେ ପ୍ରବେଶ କଲେ । ସେଠାରେ ଥିବା ବହୁ ସରକାରୀ କଚେରୀ ଓ ବେସରକାରୀ କୋଠାବାଡ଼ି ପୋଡ଼ି ଧ୍ୱଂସ କଲେ । ପୁରୀର ପୂର୍ବକୁ ସମୁଦ୍ରକୂଳ ଜଙ୍ଗଲରେ ଘାଟି କରି ରହିଲେ ।

୧୩ ତାରିଖ ଦିନ ସକାଳୁ ବିଦ୍ରୋହୀମାନେ ଜଙ୍ଗଲ ଭିତରୁ ବାହାରି ସରକାରୀ ହାକିମମାନେ ଲୁଚିଥିବା ଘର ଉପରେ ଆକ୍ରମଣ କଲେ । ସରକାରୀ ସିପାହୀମାନେ ବିଦ୍ରୋହୀ ପାଇକଙ୍କ ଉପରେ ବନ୍ଧୁକ ଓ ତୋପ ଚଳାଇଲେ । ଦୁଇଘଣ୍ଟା ପର୍ଯ୍ୟନ୍ତ ଭୀଷଣ ଲଢ଼େଇ ହେଲା । ତାପରେ ପାଇକମାନେ ଛତ୍ରଭଙ୍ଗ ଦେଇ ଖଣ୍ଡିଆ ଖାବରା ହୋଇ ସହର ଭିତରକୁ ଚାଲିଗଲେ । ସହରରେ ପ୍ରବଳ ଉତ୍ତେଜନା ପ୍ରକାଶ ପାଇଲା । ସହରର ବହୁ ସାଧାରଣ ଲୋକେ ବିଦ୍ରୋହୀ ପାଇକ ଦଳରେ ଯୋଗ ଦେଲେ ଏବଂ ଜଗନ୍ନାଥ ମନ୍ଦିରର ସେବକ ସଂପ୍ରଦାୟ ଏବଂ ମୁକୁନ୍ଦଦେବଙ୍କ ନଅର ପାଇକ ଓ ଟହଲିଆମାନେ ଏଥିରେ ଯୋଗ ଦେଇଥିଲେ । ପ୍ରବଳ ଉତ୍ତେଜନା ମଧ୍ୟରେ ଶ୍ରୀମନ୍ଦିର ପଣ୍ଡାମାନେ "ଇଂରେଜ ରାଜତ୍ୱ ନିଲୋପ

(୧) History of Orissa -- Toynbee. Part. I.

ହେଲା ଏବଂ ମହାରାଜା ମୁକୁନ୍ଦଦେବ ଖୋରଧାର ରାଜା ହେଲେ” ବୋଲି ଘୋଷଣା କରିଦେଲେ ।

ବିଦ୍ରୋହୀମାନେ ସହରର ପୂର୍ବ ଓ ପଶ୍ଚିମ ଦିଗରୁ ସରକାରୀ ଆସ୍ଥାନ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଦକ୍ଷିଣରେ ସମୁଦ୍ର । କେବଳ ଉତ୍ତର ଦିଗରେ ଜଗନ୍ନାଥ ସଡ଼କଟି ସରକାରୀ ଲୋକଙ୍କ ପାଇଁ ଖୋଲା ଥିଲା । ସେହି ବାଟରେ କ୍ୟାପ୍‌ଟେନ ଓ୍ୱାଲିଙ୍ଗଟନ ଦୁଇଜଣ ଲୁଣ ଏଜେଣ୍ଟ ବେଚର ଓ କିଙ୍ଗ ଏବଂ ଯାର୍ଜୀ ଟିକସର କଲେକ୍ଟର ବୁସଭଙ୍କୁ ସାଙ୍ଗରେ ନେଇ ପୁରୀ ଛାଡ଼ି କଟକ ପଳାଇଗଲେ । ସେମାନେ କଟକରେ ୧୮ ତାରିଖରେ ପହଞ୍ଚିଲେ । ଏହା ପରେ ସରକାର ପାଇକ ଉପଦ୍ରୁତ ଅଞ୍ଚଳ ପୁରୀ, ପିପିଲି, ଲେମ୍ବେଇ ଓ କୋଠଦେଶ ପ୍ରଗଣାରେ ସାମରିକ ଆଇନ ଜାରି କଲେ । ଏହି ସମୟକୁ କଟକ ଠାରୁ ଦକ୍ଷିଣ ଅଞ୍ଚଳର ସବୁ ରାସ୍ତା ଘାଟ ବିଚ୍ଛିନ୍ନ ହୋଇ ଯାଇଥିଲା । ତେଣୁ କେଉଁଠି କ'ଣ ଘଟୁଛି ସେ କଥା କଟକ ହାକିମମାନେ ଜାଣିବା ଅସମ୍ଭବ ହେଉଥିଲା ।

ଏଣେ କ୍ୟାପ୍‌ଟେନ ଲିପିଂଗ୍ରେ ଅପ୍ରେଲ ତା ୯ ରିଖରେ କଟକରୁ ବାହାରି ବିନା ବାଧାରେ ଖୋରଧାରେ ପହଞ୍ଚିଲେ । କାରଣ ସେତେ-ବେଳକୁ ଖୋରଧା ଜୟ କରି ସାରି ବିଦ୍ରୋହୀମାନେ ପୁରୀରେ ଠୁଳ ହୋଇଥିଲେ । ଲିପିଂଗ୍ରେ ୧୬ ତାରିଖ ଦିନ ପୁରୀ ଆଡ଼କୁ ଅଗ୍ରସର ହେଲେ । ଖୋରଧା ଠାରୁ ଗଲାବେଳେ ପାଇକ ବସନ୍ତ ବାଜପୁର ଓ କଦଳୀ ବାଡ଼ ପୋଡ଼ି ଧ୍ୱଂସ କରି ଦେଇ ସେହିଦିନ ସଂଧ୍ୟାରେ ତାପଙ୍ଗରେ ପହଞ୍ଚିଲେ । ୧୭ ତାରିଖ ଦିନ ସେଠାରୁ ବାହାରି କଣାସରେ ପହଞ୍ଚିଲେ । ସନ୍ଧ୍ୟାବେଳେ ଲୁଣା ନଈ ପାର ହୋଇ ନଈ ବନ୍ଧ ଉପରେ ଥିବା ନୂଆଗାଁରେ ଡେରା ପକାଇଲେ ।

୧୮ ତାରିଖ ସକାଳେ ନୂଆଗାଁରୁ ବାହାରି ଦୋବନ୍ଧାଠାରେ ପହଞ୍ଚିଲା ବେଳକୁ ସେଠାରେ ପ୍ରାୟ ୧୦୦୦ ପାଇକ ବନ୍ଧ ତଳେ ଘାଟି କରି ରହିଥିଲେ । ପାଇକ ଘାଟି ଉପରେ ଲିପିଂଗ୍ରେ ୩ ଦିଗରୁ ଆକ୍ରମଣ କରି ସେମାନଙ୍କୁ ଛତ୍ରଭଙ୍ଗ କରିଦେଲେ । ୧୮ ତାରିଖ ଦିନ ୨ ଟା ବେଳେ ପୁରୀ ସହରରେ ପହଞ୍ଚିଲେ ।

ତେଣେ ପୁରୀରେ ୧୩ ତାରିଖ ଦିନ ବିଦ୍ରୋହୀମାନଙ୍କ ଆକ୍ରମଣ ଯୋଗୁ ଇଂରେଜମାନେ ପୁରୀ ଛାଡ଼ି କଟକ ଚାଲିଯାଇଥିଲେ । ଏହି ସମୟ ମଧ୍ୟରେ ୧୩ ତାରିଖରୁ ୧୭ ତାରିଖ ପର୍ଯ୍ୟନ୍ତ ବକ୍‌ସି ଓ ପୁରୀ ରାଜାଙ୍କ ମଧ୍ୟରେ ବାଲିସାହି ନଅରରେ ଆଲୋଚନା ଚାଲିଥିଲା । ଏହି ଆଲୋଚନାରେ ରାଜା ପରିବାରବର୍ଗଙ୍କୁ ଧରି ଖୋରଧା ଯିବା ସ୍ଥିର ହୋଇଥିଲା । ରାଜାଙ୍କୁ ସହସ୍ର ସହସ୍ର ପାଇକଙ୍କ ଗହଣରେ ପୁରୀରୁ ନେଇ ଖୋରଧା ଗାଦିରେ ବସାଇବା ପାଇଁ ଶୋଭାଯାତ୍ରା କରାଯିବାର ଘୋଷିତ ହୋଇଥିଲା ।

କିନ୍ତୁ ମୁକୁନ୍ଦଦେବ କ୍ୟାପ୍‌ଟେନ ଲିପିଂଗ୍ରେଙ୍କ ନେତୃତ୍ୱରେ ଇଂରେଜ ସୈନ୍ୟ ପୁରୀ ଆସୁଛନ୍ତି ଜାଣିପାରି ଭୟ କଲେ । ଏହି ସମୟରେ ମୁକୁନ୍ଦଦେବ ଯେଉଁ ପନ୍ଥା ଅବଲମ୍ବନ କଲେ ତା' ଦ୍ୱାରା ସେ ବିଶ୍ୱାସ-ଘାତକତା କଲେ । କାରଣ ସେ ୨୨ ତାରିଖ ଜୁନ ମାସରେ ଗଭର୍ଣ୍ଣର ଜେନେରାଲଙ୍କ ପାଖକୁ ପଠାଇଥିବା ଚିଠିରୁ ତାହା ପ୍ରମାଣିତ ହେଉଛି । (୧) (ଚିଠିଟିର ନକଲ ପରିଶିଷ୍ଟରେ ଦ୍ରଷ୍ଟବ୍ୟ)

ସେ ଚିଠିରେ ଅଛି ଯେ, "ଜଗବନ୍ଧୁଙ୍କୁ ବହୁ ଆଲୋଚନା ପରେ ମୁଁ କହିଲି — ଆପଣ ଯେଉଁ ମୂର୍ଖତାର ପନ୍ଥା ଧରିଛନ୍ତି, ମୁଁ କାହିଁକି ସେଥିରେ ଯୋଗ ଦେବି ? କାହିଁକି ମୁଁ ଶ୍ରୀ ଜଗନ୍ନାଥଙ୍କ ସେବା ଛାଡ଼ି ଆପଣଙ୍କୁ ଅନୁସରଣ କରିବି ଏବଂ ଜେନାମଣିଙ୍କୁ ବିଶ୍ୱାସରେ ଆପଣଙ୍କ ହାତରେ ସମର୍ପଣ କରିଦେବି ? ଯଦି ଆପଣଙ୍କର ମୋତେ ହତ୍ୟା କରିବାକୁ ଇଚ୍ଛା ଥାଏ ତାହାହେଲେ ଏହିଠାରେ ହିଁ ମୋତେ ହତ୍ୟା କରନ୍ତୁ । ଏହି ପୁଣ୍ୟ କ୍ଷେତ୍ରରେ ମଲେ ମୋର ସ୍ୱର୍ଗବାସ ହେବ । ମୋତେ ନେବାରେ କି ଜେନାମଣିଙ୍କୁ ତାଙ୍କ ହାତରେ ସମର୍ପଣ କରି ଦେବାର ଆଉ ଆଶା ନ ଦେଖି ମୋର ସମ୍ପତ୍ତି ଓ ମୋର ଲୋକଙ୍କର ସମ୍ପତ୍ତି ଲୁଟ କରି ନେଇ ପୁରୁଷୋତ୍ତମ ଛତ୍ର ଛାଡ଼ି ବାହାରିଗଲେ । ଗଲାବେଳେ ସେ ମୋତେ କହିଗଲେ, "ଆପଣଙ୍କ ଭୃତ୍ୟ ହିସାବରେ ମୋ ଉପରେ

(୧) Letter dated 15.7.1817 from C. A. Molory, Actg. Pesian Secy. to govt. Ten department.

ଆପଣଙ୍କର ଯେଉଁ ଦାବୀ ଥିଲା ଆଜଠାରୁ ସେହି ଦାବୀ ଆପଣ ହରାଇଲେ । ସେ ଯିବା ପୂର୍ବରୁ ମୁଁ ଗୁପ୍ତରେ ଲଫିବ୍ରେଙ୍କୁ ଏହିସବୁ ଘଟଣା ଜଣାଇ ଦେଇଥିଲି ।" (୨)

ଲଫିବ୍ରେ ଯାଇ ୧୮ ତାରିଖ ଦିନ ପୁରୀରେ ପହଞ୍ଚିଲା ବେଳକୁ ରାଜା ତାଙ୍କ ଉପରେ ବିପଦ ଆଶଙ୍କା କରି ଅନ୍ୟତ୍ର ଚାଲିଯିବା ପାଇଁ ୧୭ ଟି ପାଲିଙ୍କି ସଜ୍ଜିତ କରି ରଖିଥିଲେ । କିନ୍ତୁ ତାଙ୍କ କଳ୍ପନା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । ଲଫିବ୍ରେ ମୁକୁନ୍ଦଦେବଙ୍କୁ ଅଟକ କଲେ ।

୨୮ ତାରିଖ ଦିନ ମେଜର ହାମିଲଟନ କଟକରୁ ପୁରୀ ଅଭିମୁଖରେ ଯାତ୍ରା କଲେ । ବାଟରେ କାଠଯୋଡ଼ି ପାରି ହୋଇ ହାମିଲଟନ ସାରଙ୍ଗଗଡ଼ ଠାରେ ବିଦ୍ରୋହୀମାନଙ୍କ ଘାଟି ଉପରେ ଗୁଳି ବର୍ଷଣ କରିବାରୁ ବିଦ୍ରୋହୀ-ମାନେ ଗଡ଼ରୁ ବାହାରି ପଟିଆ ଓ ଦାରୁଠେଙ୍ଗ ଆଡ଼େ ପଳାଇଗଲେ । ହାମିଲଟନ ପିପିଲିରେ ବିନା ବାଧାରେ ପହଞ୍ଚିଲେ । ହାମିଲଟନ ପିପିଲିରେ ଶାନ୍ତି ପ୍ରତିଷ୍ଠା ପାଇଁ କାପ୍ଟେନ ଆରମଷ୍ଟ୍ରଙ୍ଗଙ୍କ ଅଧିନାୟକତ୍ୱରେ ଦଳେ ସିପାହୀଙ୍କୁ ସେଠାରେ ରଖିଲେ । ନିଜେ ମେଜର ହାମିଲଟନ ପୁରୀରେ ପହଞ୍ଚିବାରେ କ୍ୟାପ୍ଟେନ ଲଫିବ୍ରେ ରାଜା ମୁକୁନ୍ଦଦେବଙ୍କୁ ଧରି କଟକ ଅଭିମୁଖରେ ଯାତ୍ରା କଲେ । କଟକ ଯିବା ବାଟରେ ଲଫିବ୍ରେ ପିପିଲି ଠାରେ ପ୍ରାୟ ୨୫୦୦ ପାଇକ ବିଦ୍ରୋହୀଙ୍କ ସମ୍ମୁଖୀନ ହେଲେ । ବିଦ୍ରୋହୀ-ମାନେ ମୁକୁନ୍ଦଦେବଙ୍କୁ ଛଡ଼ାଇ ନେବାକୁ ଚେଷ୍ଟା କରିଥିଲେ । ପାଇକ-ମାନଙ୍କ ଆକ୍ରମଣକୁ ଲଫିବ୍ରେ ଆଗରୁ ପିପିଲି ଠାରେ ଥିବା ଆରମଷ୍ଟ୍ରଙ୍ଗଙ୍କ ସୈନ୍ୟମାନେ ସମ୍ମୁଖୀନ ହୋଇ ତୋପରୁ ଗୁଳି ଫୁଟାଇବାରେ ପାଇକ-ମାନେ ଛତ୍ରଭଙ୍ଗ ଦେଲେ । ମେ ୧୧ ତାରିଖ ଦିନ ଲଫିବ୍ରେ କଟକରେ ପହଞ୍ଚିଲେ ଏବଂ ମୁକୁନ୍ଦଦେବଙ୍କୁ ବାରବାଟୀ ଦୁର୍ଗରେ କଡ଼ା ପହରା ମଧ୍ୟରେ ବନ୍ଦୀ କରି ରଖିଲେ ।

ଏହି ସମୟରେ କରୁଣାକର ପରମଗୁରୁଙ୍କ ନେତୃତ୍ୱରେ ଦଳେ ପାଇକ ଗୋପ ଥାନା ଆକ୍ରମଣ କଲେ । ସେଠାରେ ସାଧାରଣ ଲୋକେ ଏହି ବିଦ୍ରୋହରେ ଯୋଗ ଦେଇଥିଲେ । ଏହି ଥାନାରେ ଥିବା ସୈନ୍ୟ-ମାନେ ସେ ସ୍ଥାନ ଛାଡ଼ି ଜୀବନ ରକ୍ଷା ପାଇଁ ପିପିଲି ସେନା ଛାଉଣୀକୁ

(୨) The Orissa Historical Research Journal Vol. I No2

ଚ଼ାଲ ଆସିଥିଲେ । ଗୋପ ଥାନାର ଏହି ଦୁର୍ଦ୍ଦଶା ଦେଖି, କାପ୍ଟେନ ଫେତ୍‌ଫୁଲ (Faithful) ୮୦ ଜଣ ସିପାହିଙ୍କୁ ଧରି ଗୋପ ଅଭିମୁଖେ ଯାତ୍ରା କରି ନମାପଡ଼ାରେ ପହଞ୍ଚିଲେ । ଏହି ସୈନ୍ୟ ଦଳ ଆସିବାର ଶୁଣି ଗୋପରୁ ଲୋକେ ଘରଛାଡ଼ି ମରିଚପୁର, ହରିପୁର ଓ ୱଙ୍କଡ଼ ପ୍ରଭୃତିକୁ ଚାଲିଗଲେ । କିନ୍ତୁ ସେ ପ୍ରଗଣାମାନଙ୍କର ଜମିଦାରମାନେ ବିଦ୍ରୋହୀମାନଙ୍କୁ ଧରିବାରେ ସରକାରଙ୍କୁ ସାହାଯ୍ୟ କରିବାରୁ ପୁରସ୍କାର ପାଇଥିଲେ ।

ଏହି ସମୟରେ ଖୋର୍ଦ୍ଧାରୁ ଦଳେ ପାଇକ ଓ ପାଇକ ନେତା କଟକ ଜିଲ୍ଲା ଭିତରେ ପଶି ସମୁଦ୍ର ଉପକୂଳ ଅଞ୍ଚଳରେ ବିଦ୍ରୋହ ଆରମ୍ଭ କରି ଦେଇଥିଲେ । କୁଜଙ୍ଗ ଅଞ୍ଚଳ ଏବଂ ପାରାଦ୍ୱୀପ ଚାରିପଟେ ଘାଟି-ମାନଙ୍କରେ ପାଇକମାନେ ଜଗି ରହିଥିଲେ । ଏହିଠାରେ ବ୍ରିଟିଶ ସେନାଙ୍କ ଉପରେ ପାଇକମାନେ ଆକ୍ରମଣ କଲେ । ପରେ ପରେ ନୂଆଗଡ଼ ପ୍ରଭୃତିରେ ସଂଘର୍ଷ ହୋଇଥିଲା । କିନ୍ତୁ ବ୍ରିଟିଶମାନଙ୍କ ତୋପ ମାଡ଼ରେ ସେମାନେ ବହୁ ସମୟ ଧରି ବିଦ୍ରୋହ ଚଳାଇ ରଖିପାରି ନଥିଲେ ।

କେନେଟ୍‌ଙ୍କୁ ଆଗରୁ ଏହି ବିଦ୍ରୋହର ସରଦାର ନାରାୟଣ ପରମଗୁରୁ ଓ ବାମଦେବ ପଞ୍ଚଯୋଶୀଙ୍କ ସଂପର୍କରେ କୁଜଙ୍ଗ ରାଜା ମଧୁସୂଦନ ଷେଣ୍ଢ ଜଣାଇ ପ୍ରିୟପାତ୍ର ହେବାକୁ ଚେଷ୍ଟା କରିଥିଲେ । ତାଙ୍କରି ସାହାଯ୍ୟରେ ଉକ୍ତ ଦୁଇ ନେତା ଗିରଫ ହେଲେ ଏବଂ ରାଜା ନିଜେ ଆତ୍ମସମର୍ପଣ କଲେ । ସମସ୍ତଙ୍କୁ କେନେଟ୍ କଟକ ପଠାଇ ଦେଇଥିଲେ ।

ତାପରେ ଅକ୍ଟୋବର ମାସ ଆଡ଼କୁ କୁଜଙ୍ଗରୁ ସାମରିକ ଆଇନ ଉଠିଯାଇଥିଲା ।

ଖୋର୍ଦ୍ଧା ବିଦ୍ରୋହରେ ଖୋର୍ଦ୍ଧା ଓ ପିପିଲି ଅଞ୍ଚଳର ବହୁ ଲୋକ ଗାଁ ଗଣ୍ଡା ଛାଡ଼ି ଜଙ୍ଗଲକୁ ଚାଲିଯାଇଥିଲେ । ବହୁ ଲୋକ ନିକଟସ୍ଥ ଗଡ଼ଜାତମାନଙ୍କୁ ଚାଲିଯାଇଥିଲେ । ଗଡ଼ଜାତର ରାଜାମାନେ ଅର୍ଦ୍ଧସ୍ୱାଧୀନ ଥିବାରୁ ଇଂରେଜଙ୍କ ପକ୍ଷରେ ବିଦ୍ରୋହୀମାନଙ୍କୁ ଧରିବାରେ ଅନେକ ଅସୁବିଧା ହେଉଥିଲା । ଘୁମୁସର ଗଞ୍ଜାମ ଜିଲ୍ଲାରେ ଥିଲା ଏବଂ ତାହା ପୁଣି

ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଥିଲା ତେଣୁ କୌଣସି କାର୍ଯ୍ୟାନୁଷ୍ଠାନ କରିବା ପାଇଁ ମାନ୍ଦ୍ରାଜରୁ ଚିଠିପତ୍ର ଆଦାନ ପ୍ରଦାନରେ ବହୁ ବିଳମ୍ବ ହେଉଥିଲା ।

ପ୍ରାୟ ୧୭୭୦ ଠାରୁ ୫୦ ବର୍ଷ ଧରି ଘୁମୁସର ରାଜ୍ୟରେ ଅନବରତ ବିଦ୍ରୋହ ଲାଗିରହିଥିଲା । ପୁଣି ଖୋର୍ଦ୍ଧା ଅଞ୍ଚଳର ନିକଟବର୍ତ୍ତୀ ହୋଇଥିବାରୁ ଉଭୟ ଅଞ୍ଚଳକୁ ବିଦ୍ରୋହୀମାନେ ଗମନାଗମନ କରିବାକୁ ସୁବିଧା ହେଉଥିଲା । ଗଞ୍ଜାମର ଶେରଗଡ଼ ରାଜା ବକ୍ସିଙ୍କ ଶ୍ୱଶୁର ଥିବାରୁ ଏବଂ ଘୁମୁସର ରାଜା ବକ୍ସି ବଂଶର ବନ୍ଧୁ ଥିବାରୁ ବକ୍ସି ଶେରଗଡ଼ ଓ ଘୁମୁସର ରାଜାଙ୍କ ଆଶ୍ରୟରେ ଲୁଚି ରହିଲେ । (୧)

୧୮୧୮ ଅପ୍ରେଲ ଆଡ଼କୁ ଖୋର୍ଦ୍ଧା ଅଞ୍ଚଳରେ କେତେକାଂଶରେ ଶାନ୍ତି ପ୍ରତିଷ୍ଠା ହୋଇଥିବା ଯୋଗୁ ପଳାତକମାନେ ଫେରି ଆସିବାକୁ ସରକାର ଘୋଷଣା କଲେ ।

ବାଣପୁର ଛଡ଼ା ଅନ୍ୟାନ୍ୟ ସ୍ଥାନରେ ବିଦ୍ରୋହୀମାନଙ୍କର ତତ୍-ପରତା କମିଯାଇ ଥିବାରୁ ଅପ୍ରେଲ ମାସ ୧୦ ତାରିଖ ୧୮୧୮ ରେ ଖୋର୍ଦ୍ଧା, ପିପିଲି, ଗୋପ ଓ ପୁରୀ ଥାନାରୁ ସାମରିକ ଆଇନ ଉଠିଲା ବୋଲି ସରକାର ଘୋଷଣା କଲେ ଏବଂ ସେଥି ସାଙ୍ଗେ ସାଙ୍ଗେ ଲୋକେ ଶାନ୍ତିପୂର୍ଣ୍ଣ ଭାବେ ଚଳିବାପାଇଁ ଆଗ୍ରହୀ ହେବେ ବୋଲି ମଧ୍ୟ ବାଣପୁର ଅଞ୍ଚଳରୁ ସାମରିକ ଆଇନ ଉଠିଗଲା । ପୁଣି ନାନା ଗଣ୍ଡଗୋଳ ଆରମ୍ଭ ହେବାରୁ ପୁନରାୟ ବାଣପୁର ଅଞ୍ଚଳରେ ସାମରିକ ଆଇନ ଜାରି ହେଲା ।

ଶାସନ କାର୍ଯ୍ୟ ସୁଗୃରୁ ରୂପେ ପ୍ରତିଷ୍ଠିତ କରିବାପାଇଁ ୧୮୧୮ ମସିହା ଅପ୍ରେଲ ମାସରେ ଖୋର୍ଦ୍ଧାରେ ମିଃ ରିବର୍ଟକେର ଜଏଣ୍ଟ ମାଜିଷ୍ଟ୍ରେଟ ନିଯୁକ୍ତ ହେଲେ ।

ପୁଣି ୧୮୧୮ ଅପ୍ରେଲ ଠାରୁ ଜୁନ୍ ମାସ ମଧ୍ୟରେ ଖୋର୍ଦ୍ଧା ଅଞ୍ଚଳର ଅବସ୍ଥା ଖରାପ ଆଡ଼କୁ ଗତିକଲା । ଯେଉଁମାନେ ଇଂରେଜଙ୍କୁ ସାହାଯ୍ୟ

(୧) Letter dated 10. 4. 1818 form the Secretary to the Commissioner.

କରୁଥିଲେ, ସେମାନଙ୍କ ଧନ ଓ ଜୀବନ ଉପରେ ବିଦ୍ରୋହୀମାନେ ଅତର୍କିତ ଆକ୍ରମଣ କରୁଥିଲେ । ବିଦ୍ରୋହୀମାନଙ୍କ ମଧ୍ୟରୁ କେତେକ ତେଲଙ୍ଗ ଓ ଜମୁନା ଝାରପଡ଼ା ଅଞ୍ଚଳରେ ଲୁଚି ରହିଥିଲେ । ସେହି ସମୟରେ ଜୟମଙ୍ଗଳ ଓ ଖଇରାପଲ୍ଲି ନିକଟବର୍ତ୍ତୀ ଗାଁ ମାନଙ୍କରେ ନାନା ଲୁଟତରାଜ ଲାଗି ରହିଲା । ଟାଙ୍ଗିଠାରୁ ବାଣପୁର ମଧ୍ୟରେ ଥିବା ଚିଲିକା ଉପକୂଳ ଗ୍ରାମମାନଙ୍କ ଅବସ୍ଥା ଅତି ଖରାପ ହୋଇପଡ଼ିଲା । ଲୁଟତରାଜ ଲାଗି ରହିଥିଲା ।

ବିଦ୍ରୋହୀମାନଙ୍କୁ ଧରିବାପାଇଁ ବେଲ ସାହେବ ଏକ ନୂଆ କୌଶଳ କରିଥିଲେ । ଏହି କୌଶଳକୁ 'ହୋଷ୍ଟେଜ' କୁହାଯାଏ । ଯେଉଁମାନେ ବିଦ୍ରୋହୀ ଦଳରେ ଯୋଗଦେଇ ଅନ୍ୟତ୍ର ଥିଲେ ସେମାନଙ୍କ ପିଲା-କୁଟୁମ୍ବଙ୍କୁ ଧରିନେଇ କ୍ୟାମ୍ପ ମାନଙ୍କରେ ରଖି, ବିଦ୍ରୋହୀମାନେ ଆତ୍ମସମର୍ପଣ ନ କଲେ ପିଲାପିଲାଙ୍କୁ ଛାଡ଼ି ଦିଆଯିବ ନାହିଁ ବୋଲି ସ୍ଥିର କରାଯାଇ କାର୍ଯ୍ୟ ଆରମ୍ଭ କରାଗଲା । (୧) ଏଥିରେ ବିଶେଷ କିଛି ଫଳ ହେଲା ନାହିଁ ।

ଏହା ପରେ ପରେ ସରକାର ବିଦ୍ରୋହୀମାନଙ୍କୁ ଧରିବା ପାଇଁ ପୁରସ୍କାର ଘୋଷଣା କଲେ ଏବଂ ଯେଉଁମାନେ ଆତ୍ମସମର୍ପଣ କରିବେ ସେମାନଙ୍କ ପ୍ରତି ସରକାର ସଦୟ ବିଚାର କରିବେ ବୋଲି ମଧ୍ୟ ଘୋଷଣା ହେଲା ।

ଏହି ଘୋଷଣା ପରେ ପରେ ବାଣପୁରର ବ୍ରଜାନନ୍ଦ ସିଂ ଆତ୍ମ-ସମର୍ପଣ କଲେ ଏବଂ ବ୍ରଜାନନ୍ଦଙ୍କ ସାହାଯ୍ୟରେ ଘାଟପଡ଼ାର ବିଦ୍ରୋହୀ ଦଳବେହେରାଙ୍କୁ ଧରିବାର ଉଦ୍ୟମ ବେଲ୍ ସାହେବ କଲେ । ପଞ୍ଚୁଲ୍ଲୀ ଦଳବେହେରା ୧୮୧୮ ଜୁଲାଇ ୧୬ ତାରିଖରେ ଆତ୍ମସମର୍ପଣ କଲେ ।

ବେଲ୍ ସାହେବଙ୍କର, ଖୋର୍ଦ୍ଧାରୁ ବିଦ୍ରୋହୀମାନଙ୍କୁ ଧରିବାପାଇଁ ଯେଉଁ ଅଭିଯାନ ହୋଇଥିଲା, ସେଥିରେ ଗଙ୍ଗପଡ଼ାର ଦଳବେହେରା ଭାଗୁ ହରିଚନ୍ଦନ ଓ ତାଙ୍କ ଭାଇ ମାଖନ ସିଂହ ଧରାପଡ଼ିଲେ । ଭାଗୁ ଓ ମାଖନ ବିଦ୍ରୋହୀ ସରଦାର ଗୋପାଳ ଛୋଟରାଙ୍କର ପୁତ୍ରରା ।

(୧) ବେଲ୍ ସାହେବଙ୍କର ବାଣପୁର ଠାରୁ କମାଣ୍ଡର ହ୍ୱାଇଟ୍ ସାହେବଙ୍କ ନିକଟକୁ ୧୮୧୮ ଜୁନ୍ ୧୫ ତାରିଖ ପତ୍ର ।

ଗୋପର ଚନ୍ଦ୍ରଙ୍କୁ ଧରିବାପାଇଁ ବାଲକାଟିରୁ ଫରେଷ୍ଟର ସାହେବ, କ୍ୟାପ୍‌ଟେନ୍ ଲଟମାନ ଓ ଦଳେ ସିପାହୀଙ୍କୁ ଧରି ଗୋପ ଆଡ଼େ ଅଗ୍ରସର ହେଲେ । ଗୋପର ଗଞ୍ଜପଡ଼ା ଠାରୁ ଚନ୍ଦ୍ରଙ୍କର ଭାଇ ଗୋପାଳ ସାନ୍ତରା ଏବଂ ଅନ୍ୟ ଦୁଇ ଭାଇଙ୍କ ସହ ସେ ଗାଁର ଚଉବିଶ ଜଣଙ୍କୁ ଗିରଫ କରି ଆଣି ପିପିଲି ଥାନାକୁ ପଠାଇଦେଲେ ।

ଛତଗଡ଼ର ବିଶୋଇ ରଥି ସାମନ୍ତସିଂହାରଙ୍କ ଭାଇ ଗୌରାଙ୍ଗ ପଟ୍ଟନାୟକ, ସାମନ୍ତସିଂହାର ବୁଡ଼ ଗ୍ରାମରେ ଥିବା ଖବର ଦେଲେ । ସେହି ଗ୍ରାମରେ ବେଲ୍ ସାହେବ ଅତର୍କିତ ଆକ୍ରମଣ କରି ରଥି ସାମନ୍ତ-ସିଂହାର ଓ ତାଙ୍କ ପୁଅ ସରଦାର ଗୁମାନସିଂହଙ୍କୁ ଧରିଲେ ଏବଂ ବିଶ୍ୱାସୀ ପୁତ୍ର ସତ୍ୟବାଦୀ ଧରାହେଲେ । ତାଙ୍କ ଗୃହର ଲୋକନାଥ ଆତ୍ମସମର୍ପଣ କଲା । ରଥିଙ୍କ ସହ ଗୃହଜଣଙ୍କୁ ଖୋର୍ଦ୍ଧାକୁ ପଠାଇ ଦିଆହେଲା ।

ସିକୋ ଗ୍ରାମର ଦାମ ସୁବୁଦ୍ଧି ବକ୍‌ସିଙ୍କର ଜଣେ ପ୍ରଧାନ ସର୍ଦ୍ଦାର ଥିଲେ । ଦାମ ସୁବୁଦ୍ଧିଙ୍କ ପରି ଅନ୍ୟ କେତେ ବିଦ୍ରୋହୀ ଆଠମଲ୍ଲିକରେ ଲୁଚି ରହିଥିଲେ । ରିଫସେଡ଼ଜଙ୍କ ପାଖରେ ଦାମ ସୁବୁଦ୍ଧି ଓ ତାଙ୍କର ଦୁଇ ଭାଇ ନିତ୍ୟାନନ୍ଦ ମଙ୍ଗରାଜ ଓ ସୋମନାଥ ପାଟଶାହାଣି ( ୪୦ ବର୍ଷ ) ଓ ପୁତୁରା ଦାଶରଥି ପାଇକରା (ବୟସ ୧୯) ସମ୍ବଲପୁରରେ ସେପ୍‌ଟେମ୍ବର ୩ ତାରିଖରେ ଗିରଫ ହେଲେ । ଏତେବେଳକୁ ସିକୋଗଡ଼ର ଦଳବେହେରା ଆତ୍ମଗୋପନ କରି ରହିଥିଲେ । ସରକାରଙ୍କ ତରଫରୁ ସାଧାରଣ କ୍ଷମା ଘୋଷିତ ହେବା ପରେ ତାଙ୍କର ବ୍ୟାଜାପ୍ତ ଜାଏଗିର ଫେରସ୍ତ ହେଲା ଓ ତାଙ୍କୁ ମୁକ୍ତି ମିଳିଲା ।

୧୮୧୮ ଅକ୍ଟୋବର ଓ ତା ପୂର୍ବରୁ କେତେକ ବିଦ୍ରୋହୀ ସରକାରୀ କ୍ଷମା ପାଇବା ଆଶାରେ ଆତ୍ମସମର୍ପଣ କରିଥିଲେ ।

ନିଧି ମହାନ୍ତି ଓ ବାମନ ମହାନ୍ତି ଆତ୍ମସମର୍ପଣ କଲେ । ଏହାଙ୍କୁ ନଭେମ୍ବର ୭ ତାରିଖରେ କ୍ଷମା ମିଳିଲା ।

ସାଧୁ ଚରଣ ମଙ୍ଗରାଜ, ବିଷ୍ଣୁ ପାଇକରାୟ ( ଓରଫ ଯୁଗଳ ଜେନା ) ଓ ଧନୀ ଜେନାଙ୍କୁ ଯେଉଁମାନେ ଧରାଇ ଦେଇଥିଲେ ସେମାନଙ୍କୁ

ସରକାରଙ୍କ ତରଫରୁ ପୁରସ୍କାର ଦିଆଗଲା । ମଙ୍ଗରାଜଙ୍କ ପାଇଁ ଟ ୨୫୦୦୯, ବିଷ୍ଣୁ ପାଇକରାୟଙ୍କ ପାଇଁ ଟ ୨୫୦୯, ଧର୍ମା ଜେନାଙ୍କ ପାଇଁ ଟ ୫୦୯ ପୁରସ୍କାର ଦିଆଗଲା ।

ନଭେମ୍ବର ୫ ତାରିଖ ଦିନ ସନ୍ଧ୍ୟାରେ ଦୀନବନ୍ଧୁ ସାମନ୍ତରା ଓ ଅଗଙ୍ଗ ଦଳବେହେରା ଭୀଟପଡ଼ା ଠାରେ ଓ ୬ ତାରିଖ ଦିନ ଦିନବଂଧୁ ସାମନ୍ତରାଙ୍କ ପାଇକ ସରଦାର ଅଚ୍ୟୁତ ସାମନ୍ତରା ଆତ୍ମସମର୍ପଣ କଲେ । ଏମାନେ ସରକାରଙ୍କ ପ୍ରତି ଅନୁରକ୍ତ ରହିବେ ବୋଲି ଶପଥ ଗ୍ରହଣ କଲେ ।

୧୮୧୯ ଜାନୁଆରୀରେ ଗଭର୍ଣ୍ଣର ଜେନେରାଲ-ଇନ୍-କାଉନ୍‌ସିଲ ଓଡ଼ିଶା ପାଇକ ବିଦ୍ରୋହରେ ଲିପ୍ତଥିବା ବିଦ୍ରୋହୀମାନଙ୍କ ମଧ୍ୟରୁ ଯେଉଁମାନେ ଆତ୍ମସମର୍ପଣ କରିଥିଲେ ସେମାନଙ୍କୁ ବିନା ସର୍ତ୍ତରେ ପୂର୍ଣ୍ଣ କ୍ଷମା ଦେବା ଆଦେଶ ଘୋଷିତ ହେଲା ।

ଏଣିକି ଯେଉଁମାନେ ଆତ୍ମସମର୍ପଣ କରିବେ ସେମାନଙ୍କୁ କ୍ଷମା ଦିଆଯିବ ବୋଲି ମଧ୍ୟ ଘୋଷଣା କରାଗଲା । କିନ୍ତୁ ପିଣ୍ଡିକ ବାହୁବଳୀନ୍ଦ୍ର, ଗୋପାଳ ଛୋଟରା ଏବଂ ପଦ୍ମନାଭ ଛୋଟରାଙ୍କୁ ଧରି ଦେବା ପାଇଁ ଏକ ହଜାର ଟଙ୍କା ଏବଂ ପୀତବାସଙ୍କ ପାଇଁ ତିନିଶତ ଟଙ୍କା ପୁରସ୍କାର ଘୋଷଣା କରାଗଲା ।

ଏମାନଙ୍କ ମଧ୍ୟରୁ ଗୋପାଳ ଛୋଟରାଙ୍କ ନାମରେ ହତ୍ୟା ଓ ଦୁର୍ଦ୍ଦାନ୍ତ ବିଦ୍ରୋହୀ ପ୍ରଭୃତି ଅଭିଯୋଗ ଥିଲା । ପଦ୍ମନାଭ ଛୋଟରାଙ୍କୁ ମଧ୍ୟ ଦୁର୍ଦ୍ଦାନ୍ତ ବିଦ୍ରୋହୀ ବୋଲି ଧରାଯାଇଥିଲା ଏବଂ ପିଣ୍ଡିକ ବାହୁବଳୀନ୍ଦ୍ର ଆଜୀବନ ଜେଲଦଣ୍ଡ ଭୋଗୁଥିଲା ବେଳେ ଜେଲ ଭାଙ୍ଗି ଚାଲି ଆସିଥିଲେ । ଏହା ସଙ୍ଗେ ସଙ୍ଗେ ବକ୍‌ସି ଜଗବନ୍ଧୁଙ୍କୁ ଧରି ଦେବା ପାଇଁ ଟ ୫୦୦୦୯ ପାଞ୍ଚ ହଜାର ଏବଂ ଦେବାନ କୃଷ୍ଣଚନ୍ଦ୍ରଙ୍କୁ ଧରି ଦେବା ପାଇଁ ଟ ୨୦୦୦୯ ଏବଂ ଜଗବନ୍ଧୁଙ୍କ ସହିତ ନିମ୍ନଲିଖିତ ପ୍ରଧାନ ବିଦ୍ରୋହୀ ନେତାମାନଙ୍କୁ ଧରିବା ପାଇଁ ଟ ୧୦୦୦୯ ପୁରସ୍କାର ଘୋଷଣା କରାଗଲା । (୧) ସେମାନେ ହେଉଛନ୍ତି :— ୧-ଧରମୁ ହରିଚନ୍ଦନ, ୨-ଲୋକନାଥ ବଳିଆର ସିଂହ,

(୧) Freedom movement in Orissa, vol. I

୩-ଆନନ୍ଦ ବିଦ୍ୟାଧର, ୪-ଉପେନ୍ଦ୍ର ଜଗଦେବ, ୫-ଦୀନବନ୍ଧୁ ସାମନ୍ତରା ୬-ପୁରୁଷୋତ୍ତମ ମାନସିଂହ, ୭-ଅନ୍ତର୍ଯ୍ୟାମୀ ପାହାଡ଼ାସିଂହ, ୮-ରାମଚନ୍ଦ୍ର-ସାମନ୍ତରାୟ, ୯-ଦାମ ଷୁବୁଦ୍ଧି, ୧୦-ଶ୍ରୀହରି ମାନସିଂହ, ୧୧-କରୁଣାକର ପରମଗୁରୁ, ୧୨-ବିଶ୍ୱନାଥ ହରିଚନ୍ଦନ, ୧୩-ଭଗବାନ ସିଂହ । ଏମାନଙ୍କ ମଧ୍ୟରୁ ଭଗବାନ ସିଂହଙ୍କର ମୃତ୍ୟୁ ହୋଇଯାଇଥିଲା । କରୁଣାକର ପରମଗୁରୁ ଓ ଦାମ ଷୁବୁଦ୍ଧି ଗିରଫ ହୋଇଥିଲେ ଏବଂ ଅନ୍ୟମାନେ କ୍ଷମା ଆଶାରେ ଆତ୍ମସମର୍ପଣ କରିଥିଲେ ।

କମିଶନରଙ୍କ ପାଖକୁ ଫୋରଷ୍ଟର ଦେଇଥିବା ଚିଠିରୁ ଜଣାଯାଏ ଯେ ଗୋପାଳ ଛୋଟରା ଏବଂ ପଦ୍ମନାଭ ଛୋଟରାଙ୍କୁ ଧରାଇବାରେ ସାହାଯ୍ୟ କରିଥିବାରୁ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ପୁରସ୍କାର ଦିଆଯାଇଥିଲା । (୧) ୧-ଶିବ ପ୍ରସାଦ ଦାରୋଗା ଟ ୧୦୦୦୲, ୨-ରାମ ମହାରଥୀ ଟ ୫୦୦୲, ୩-ଭରଥ ମାଝି ଟ ୧୦୦୲, ୪-ଜଗବନ୍ଧୁ ମଙ୍ଗରାଜ ଟ ୧୦୦୲, ୫-ନବୀନ ବାହୁବଳେନ୍ଦ୍ର ଟ ୧୦୦୲, ୬-ଶେର ଖାଁ ଟ ୧୦୦୲, ୭-ଧନୁ ଟ ୧୦୦୲

ମଳପଡ଼ାର ଜାଗିରଦାରଙ୍କ ସହ ପିଣ୍ଡିକ ବାହୁବଳେନ୍ଦ୍ର ମିତ୍ର ବସିଥିଲେ । ଜାଗିର ଓ ଟ ୧୦୦୦୲ ପୁରସ୍କାର ଲୋଭରେ ସେ ମିତ୍ରଙ୍କୁ ଦିନେ ବିଶ୍ୱାସରେ ଘରକୁ ଡାକନେଇ ଭାଙ୍ଗ ସହିତ ଧୁତୁରା ମିଶାଇ ଶୁଆଇ ପକାଇଲେ ଏବଂ ପୋଲିସକୁ ଆଗରୁ ଖବର ଦେଇଥିଲେ । ପୋଲିସ ନିଦ୍ରିତା ଅବସ୍ଥାରେ ତାଙ୍କୁ ଧରିନେଲେ ।

ଏହାପରେ ସରକାରୀ କ୍ଷମାର ସୁଯୋଗ ନେଇ ୧୮୨୫ ମେ ମାସ ଶେଷ ଆଡ଼କୁ ଖୋର୍ଦ୍ଧା ମାଜିଷ୍ଟ୍ରେଟଙ୍କ ଠାରେ ନିମ୍ନଲିଖିତ ନେତା-ମାନେ ଆତ୍ମସମର୍ପଣ କଲେ ଏବଂ କ୍ଷମା ପାଇଲେ । ଏମାନଙ୍କର ପୂର୍ବରୁ ଜାଏଗିର ସବୁ ବାଜ୍ୟାପ୍ତ ହୋଇଯାଇଥିଲା । ସେସବୁ ପରେ ଫେରି ପାଇଲେ । ୧-ଗଡ଼ ନାଳସିଂହର ଦଳବେହେରା ଗୌରାଙ୍ଗ ବରିସାଲ, ୨-ବନ୍ଧୁ ସାମନ୍ତରା—କୋରିର ଦଳେଇ, ୩-କାଳିଆ ମାନସିଂହ-ଗଡ଼ସିରେଇର ଦଳବେହେରା ହନୁଙ୍କ ଭାଇ, ୪-ହରି ସାନ୍ତରା-ବରଜାଇ ଠାକୁରାଣୀଙ୍କର ସେବାୟତ, ୫-ମଧୁ ବିଶୋଇ-ପାଇକ, ୬-ଭଗବାନ ଜାନ —ପାଇକ ୭-ରାଜୀବ ବିଶୋଇ – ପାଇକ, ୮-ଉଦ୍ଧବ ନାଏକ—ପାଇକ ।

(୧) Letter dated 28 th Dec. 1818 from Forrester to Commissioner Pakenham.

ବକ୍‌ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କୁ ଧରିବା ପାଇଁ ବହୁ ଆଗରୁ ପୁରସ୍କାର ଘୋଷଣା ହୋଇଥିଲେ ମଧ୍ୟ ବକ୍‌ସି ଓ ଦେବାନ ଧରା ପଡ଼ିଲେ ନାହିଁ କି ଆତ୍ମସମର୍ପଣ କଲେ ନାହିଁ । ତେଣୁ ସରକାର ବକ୍‌ସିଙ୍କ ପ୍ରତି କଠୋର ନୀତି ଅବଲମ୍ବନ କଲେ ।

ବକ୍‌ସି ବାଣପୁର ନିକଟ ଆଙ୍କୁଲି ଠାରେ ରହୁଛନ୍ତି ବୋଲି ଜାଣି ପାରି ତାଙ୍କୁ ଧରିବା ପାଇଁ ଏକ ପରିକଳ୍ପନା କରାଗଲା । ଏହି ପରିକଳ୍ପନା ଅନୁଯାୟୀ ୧୮୧୯ ମସିହା ଜାନୁଆରୀ ମାସ ୩୦ ତାରିଖ ଦିନ ଆଙ୍କୁଲିକୁ ବୋଲଗଡ଼, ଟାଙ୍ଗି, ବାଣପୁର ତିନିଦିଗରୁ ଅଭିଯାନ ଆରମ୍ଭ ହେଲା । ଏ ଖବର ପାଇ ବକ୍‌ସି ସେଠାରୁ ଚାଲିଯାଇ ଥିବାରୁ ସରକାରଙ୍କର ଏ କଳ୍ପନା ବ୍ୟର୍ଥ ହୋଇଗଲା ଏବଂ ବକ୍‌ସି ଓ ଦେବାନଙ୍କୁ ଧରିବା ସମ୍ପର୍କରେ ସରକାରଙ୍କର ଭାବନା ପଡ଼ିଗଲା ।

ଶେଷରେ ୧୮୧୯ ଅକ୍ଟୋବର ମାସରେ ସରକାର ଖବର ପାଇଲେ ଯେ ବକ୍‌ସିଙ୍କର ଦ୍ୱିତୀୟ ସ୍ତ୍ରୀ ଓ ତାଙ୍କର କଅଁଳା ପୁଅ ଗଞ୍ଜାମ ଜିଲ୍ଲା ଆଠଗଡ଼ରେ ଏବଂ ତାଙ୍କର ବଡ଼ ସ୍ତ୍ରୀ ଓ ତାଙ୍କ ସାଙ୍ଗରେ ଅନେକ ଚାକର ଓ ସମ୍ପର୍କୀୟ ଲୋକ ଗଞ୍ଜାମ ସହରରେ ବୀରେନ୍ଦ୍ର ପଟ୍ଟନାୟକଙ୍କ ଘରେ ରହିଛନ୍ତି । ଏମାନଙ୍କୁ ଧରି ନେବାକୁ ଖୋର୍ଦ୍ଧା ମାଜିଷ୍ଟ୍ରେଟ ଆଦେଶ ଦେଲେ ।

ସେଠାରୁ ବକ୍‌ସିଙ୍କ କୁଟୁମ୍ବ ଧରା ହୋଇ ଖୋର୍ଦ୍ଧା ମାଜିଷ୍ଟ୍ରେଟଙ୍କ ଜିମାରେ ରହିଲେ । ଏହିମାନଙ୍କୁ ଧରାଇ ଦେବାରେ ସାହାଯ୍ୟ କରିଥିବାରୁ କେତେକଙ୍କୁ ପୁରସ୍କାର ଦିଆ ହେବାଠାରୁ ଆରମ୍ଭ କରି ବକ୍‌ସିଙ୍କ କୁଟୁମ୍ବ ୧୮୨୦ ମେ ମାସ ପର୍ଯ୍ୟନ୍ତ ଚଳିବାର ସମସ୍ତ ଖର୍ଚ୍ଚ ମୋଟ ଟ ୮୦୪୫୵ ହୋଇଥିଲା ।

୧୮୨୦ ମେ ମାସରେ ବକ୍‌ସିଙ୍କ କୁଟୁମ୍ବଙ୍କୁ କଟକ ନିଆଯାଇ ବାରବାଟୀ ଦୁର୍ଗରେ ନଜରବନ୍ଦୀ କରି ସରକାର ରଖିଲେ ଏବଂ ସେମାନଙ୍କ ଭରଣପୋଷଣ ପାଇଁ ମାସିକ ଟ ୫୦୯ ଖଞ୍ଜି ଦେଲେ । ସେମାନଙ୍କ ପ୍ରତି ଉପଯୁକ୍ତ ସମ୍ମାନ ସହକାରେ ରଖିବାପାଇଁ ଗଭର୍ଣ୍ଣର ଜେନେରାଲ ଆଦେଶ ଦେଇଥିଲେ ।

"That they might be treated with proper respect and delicacy and might not be subjected to any unnecessary hardship or depravation during the period in which it would be requisite to detain them in the fort of Barabati (୧).

୧୮୨୩ ସେପ୍ଟେମ୍ବରରେ ସରକାର ଘୋଷଣା କଲେ ଯେ ବକ୍ସି ଜଗବଂଧୁ ଓ ଦେବାନ କୃଷ୍ଣଚନ୍ଦ୍ର ଧରା ନ ଦେବାରୁ ସେ ଦୁହିଁଙ୍କର ସମସ୍ତ ସଂପତ୍ତି ସରକାର ବାଜ୍ୟାପ୍ତ କରିନେଲେ ଏବଂ ଏ ଦୁହିଁଙ୍କ କୌଳିକ ପଦବୀ 'ବକ୍ସି' ଓ 'ଦେବାନ' ଆଉ ବ୍ୟବହାର କରି ପାରିବେ ନାହିଁ । (୨)

ଏହିପରି ଭାବରେ ନାନା ଉଦ୍ୟମ ସତ୍ତ୍ୱେ ବକ୍ସି ଓ ଦେବାନଙ୍କୁ ଧରିବା ସମ୍ଭବ ହୋଇ ନଥିଲା ।

୧୯୨୫ ପର୍ଯ୍ୟନ୍ତ ସମସ୍ତ ପ୍ରକାର ଉପାୟ ବ୍ୟର୍ଥ ହେବାରୁ ୧୮୨୫ ମାର୍ଚ୍ଚ ୧୬ ତାରିଖରେ ସରକାର ଟ୍ରିବୁଟାରି ସୁପରିନଟେଣ୍ଡେଣ୍ଟ ଅଫିସର ସିରସ୍ତାଦାର ଓ୍ୟାଜ ମହମ୍ମଦଙ୍କ ଦ୍ୱାରା ଜଣାଇଲେ ଯେ ବକ୍ସି ଯଦି ଆତ୍ମସମର୍ପଣ କରନ୍ତି ତା ହେଲେ ତାଙ୍କର ସମସ୍ତ ଦୋଷ କ୍ଷମା କରି ଦିଆଯିବ, ତାଙ୍କ ଭରଣପୋଷଣ ପାଇଁ ମାସିକ ଏକଶତ ଟଙ୍କା ବୃତ୍ତି ଦିଆଯିବ ଏବଂ ସେ କଟକରେ ରହିବେ । ଓ୍ୟାଜ ମହମ୍ମଦ ଏହି ପରଓ୍ୟାନା ଧରି ନୟାଗଡ଼ ନିକଟସ୍ଥ ଏକ ସ୍ଥାନରେ ବକ୍ସିଙ୍କୁ ଭେଟିଲେ । ମହମ୍ମଦଙ୍କ ସଙ୍ଗେ ବକ୍ସି ଆସି ତା ୨୭ । ୫ । ୧୮୨୫ ରେ କଟକରେ ପହଞ୍ଚି ଆତ୍ମସମର୍ପଣ କଲେ । (୩)

---

(୧) Letter from the chief secretary to the govt. of India to Commissioner Blant, Cuttack dated 21st. July 1820.

(୨) Letter from govt. of India to Commissioner, Cuttack dated 12 th. September 1923.

(୩) Letter dated 26.5.1825 from the Acting Secretary to Commissioner to the officiating Magistrate in Cuttack.

ସରକାରଙ୍କର ଏହି ପ୍ରତିଶ୍ରୁତି ଅନୁଯାୟୀ ତାଙ୍କୁ କଟକ ସହରରେ ରଖାଗଲା ଏବଂ ମାସିକ ଏକଶତ ଟଙ୍କା ବୃତ୍ତି ଦିଆଗଲା । ସେ ଯେଉଁ ଘରେ ଥିଲେ ସେହି ଘରଥିବା ଅଞ୍ଚଳ ବର୍ତ୍ତମାନ ବକ୍ସି ବଜାର ନାମରେ ପରିଚିତ ଏବଂ ଗୋଟିଏ ପୋଖରୀ ବକ୍ସି ପୋଖରୀ ନାମରେ ଅଦ୍ୟାପି ବିଦ୍ୟମାନ (୧)

ବକ୍ସିଙ୍କ ସଂପତ୍ତି ଫେରସ୍ତ ହେଲା । ଇଜମାଇଲ ସମ୍ପତ୍ତିରୁ ତାଙ୍କ ପୁତୁରା ଗଦାଧର ବିଦ୍ୟାଧରଙ୍କ ଅଂଶକୁ ଅଲଗା କରି ତାଙ୍କୁ ତାଙ୍କ ଅଂଶ ଦେବା ପାଇଁ ଆଦେଶ ହୋଇ କାର୍ଯ୍ୟକାରୀ ହେଲା ।

ଦେବାନ କୃଷ୍ଣଚନ୍ଦ୍ର ୧୮୨୬ ଜାନୁଆରୀ (୨) ରେ ଖୋର୍ଦ୍ଧା ମାଜିଷ୍ଟ୍ରେଟ ଇଣ୍ଡଲିନ୍‌କସଙ୍କ ନିକଟରେ ଆତ୍ମସମର୍ପଣ କଲେ । ସରକାର ତାଙ୍କ ଚଳିବାପାଇଁ ମାସକୁ ପ୍ରଥମେ ଟ ୫୦୲ ବୃତ୍ତି ଖଞ୍ଜିଦେଲେ ।

ପରେ ବକ୍‌ସିଙ୍କର ବୃତ୍ତି ଟ ୧୫୦୲ ଓ କୃଷ୍ଣଚନ୍ଦ୍ରଙ୍କର ଟ ୧୦୦୲ ହୋଇଥିଲା ।

ବକ୍‌ସିଙ୍କ ଆତ୍ମସମର୍ପଣରେ ସାହାଯ୍ୟ କରିଥିବାରୁ ନୟାଗଡ଼ର ଦେବାନ ବରଜୁ ପାଇକରା ଟ ୨୦୦୦୲, ଓ୍ୟାଜ ମହମ୍ମଦ ଟ ୧୦୦୦୲ ଓ ନୟାଗଡ଼ ରାଜା ବର୍ଷକର ପେସକସ୍ ଛାଡ଼ ପାଇଥିଲେ । କୃଷ୍ଣଚନ୍ଦ୍ରଙ୍କ ଆତ୍ମସମର୍ପଣରେ ସାହାଯ୍ୟ କରିଥିବାରୁ ଶ୍ୟାମସୁନ୍ଦର ଭଞ୍ଜଙ୍କୁ ଟ ୫୦୦୲, ଖୋର୍ଦ୍ଧା ଦାରୋଗା ହେମ ପ୍ରସାଦ ରାଏଙ୍କୁ ଟ ୫୦୦୲, ଖୋର୍ଦ୍ଧା ଜଏଣ୍ଟ ମାଜିଷ୍ଟ୍ରେଟଙ୍କ ସିରସ୍ତାଦାର ଶେଖ ସାଦକ ଅଲିଙ୍କୁ ଟ୫୦୲, ରାଘବ ପଟ୍ଟନାୟକଙ୍କୁ ଟ ୫୦୦୲ ପୁରସ୍କାର ଦେଇଥିଲେ ।

ବକ୍‌ସି ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ପେନ୍‌ସନ ପାଉଥିଲେ । ବକ୍‌ସିଙ୍କର ମୃତ୍ୟୁ ୧୮୨୯ ଜାନୁୟାରୀ ୨୪ ତାରିଖରେ ହେଲା । (୩) ତାଙ୍କ ମୃତ୍ୟୁ ପରେ

(୧) Orissa Hist Res. Joul— Vol. I No. 2.
(୨) Letter dated 2.1.1826 from the Jt. Magistrate, Khurda to the officiating Commissioner, Cuttack.
(୩) Orissa Historical Journal Vol. I No.2.

ତାଙ୍କର ନ'ବର୍ଷର ପୁଅ ଗୋପିନାଥ କଟକ ଆସି ସରକାରଙ୍କଠାରେ ଦରଖାସ୍ତ କଲେ ଯେ ସେ ଏତେ ବଡ଼ ପରିବାରକୁ ସସମ୍ମାନେ ଚଳାଇବା ପାଇଁ ଅସମର୍ଥ । ତେଣୁ ସରକାର ତାଙ୍କ ଜୀବତା ବସ୍ଥା (୧) ପର୍ଯ୍ୟନ୍ତ ବାର୍ଷିକ ଟ ୭୫୦୯ ସାତଶ ପଚଶ ଟଙ୍କା ବୃତ୍ତି ଦେବା ସ୍ଥିର କରି ଦେଲେ ଏବଂ ତାହା ଦିଆଗଲା ଏବଂ ରୋଡ଼ଙ୍ଗରେ ରହିବାକୁ ତାଙ୍କୁ ଅନୁମତି ଦେଲେ । ଜଗବଂଧୁଙ୍କ ସଂପର୍କରେ ଐତିହାସିକ R. D. Banerji ଙ୍କ ମତ ଉଦ୍ଧାର କରି କୁହାଯାଇ ପାରେ ଯେ—

"He served a noble propose, as his rising opened the eyes of the British masters of Orissa to some extent. In any other country except India, Jagabandhu Vidyadhar would have been regarded as a national hero and a benefactor of his own people; because by rising in rebellion and sacrificing his own self he served the nobility of Orissa from total extinction at the hands of the Bengali adventurers and the common people from longer oppression (୨)

୧୮୧୭ ବିଦ୍ରୋହରେ ଯେଉଁମାନଙ୍କ ବିଚାର କରାଯାଇଥିଲା, ସେମାନଙ୍କ ମଧ୍ୟରୁ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ଫାଶୀ ଦିଆଗଲା ।

(୧) ଚରଣ ପଟ୍ଟନାୟକଙ୍କୁ ହତ୍ୟା ଅଭିଯୋଗରେ ପରଶୁରାମ ପଟ୍ଟନାୟକଙ୍କୁ ଫାଶୀ । (୨) ସଦାଶିବଙ୍କୁ ମାରିଥିବା ଅଭିଯୋଗରେ ସଚ୍ଚିଦାନନ୍ଦଙ୍କୁ ଫାଶୀ । (୩) ଗୋପାଳ ଛୋଟରା—ଫାଶୀ । (୪) ବଂଶୀ ପାଇକରା—ଫାଶୀ । (୫) ରାମ ସିଂହ—ଫାଶୀ । (୬) ନାଥ ପ୍ରଧାନ—ଫାଶୀ । (୭) ନରସିଂହ—ଫାଶୀ । (୮) ବାମଦେବ ପଟ୍ଟଯୋଶୀ ଓ ନାରାୟଣ ପରମଗୁରୁ କୁଜଙ୍ଗ ବିଦ୍ରୋହର ନେତା ଥିବାରୁ କଷ୍ଟକର ଶ୍ରମସହ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇ ଆଲିପୁରୁ ଜେଲକୁ ପଠାଗଲା ।

---

(୧) History of Orissa. Vol. II. P.286

(୨) Letter from commissioner Blant to the chief secy. Belye on 29 th May 1825.

୧୪ ବର୍ଷ ସଶ୍ରମ କାରାଦଣ୍ଡ—

(୧) ନିତ୍ୟାନନ୍ଦ ପଟ୍ଟନାୟକ (୨) ପଦ୍ମ ଚରଣ ଦାସ (୩) ବିଷ୍ଣୁଚରଣ ଦାସ (୪) ଚୈତନ୍ୟ ଚରଣ ଦାସ (୫) କୃତ୍ତିବାସ ରାଉତରାୟ (୬) ଧରଣୀ ସିଂହ (୭) ଲୋକନାଥ ମୁଦୁଲି (୮) କହ୍ନେଇ ମଲିକ ଚୌକିଦାର (୯) କୁଟେଇ ମଲିକ । ଏମାନଙ୍କୁ କଲିକତା ନିକଟସ୍ଥ ଆଲିପୁର ଜେଲକୁ ପଠାଗଲା ।

ଦ୍ୱୀପାନ୍ତର ଦଣ୍ଡ—

(୧) ନଟବର ସୁନ୍ଦରା (୨) ଜଗନ୍ନାଥ ମହାପାତ୍ର (୩) ଫକୀର ଜେନା (୪) ଗୌଣ୍ଡ ନରେନ୍ଦ୍ର (୫) ନାରଣ ଶ୍ରୀଚନ୍ଦନ (୬) ଗୋଲକ ବାରିକ (୭) କର ପାତ୍ର (୮) କମଳଲୋଚନ ଚମ୍ପତି (୯) ଧନୁର୍ଜ୍ଜୟ ମହାରଥୀ (୧୦) ପଞ୍ଚୁ କହଲସିଂହ (କାହାଳସିଂହ) (୧୧) କେଳେଇ ଚମ୍ପତି (୧୨) ଡମଣ ସିଂହ (୧୩) ରୋଷନ୍ ଖାଁ (୧୪) ଭଜଲି ତିବାରି (୧୫) ଗୌର ସଂଗ୍ରାମସିଂହ (୧୬) ରାମ ନାୟକ (୧୭) ଗୁଣ୍ଡେଇ ନାୟକ (୧୮) ଖଟୁଆ (୧୯) ଆରତ ନାୟକ (୨୦) ବକଳ (୨୧) କଣ୍ଡୁରା ନାୟକ (୨୨) ନିଧି ନାୟକ (୨୩) ପରମାନନ୍ଦ ସିଂହ (୨୪) ଦାମ୍ ଗଜେନ୍ଦ୍ର (୨୫) ବୃନ୍ଦାବନ ନାୟକ (୨୬) ବାମ ନାୟକ (୨୭) ଚନ୍ଦ୍ର ଦାସ (୨୮) ବାମନ ନାୟକ (୨୯) ଦୁର୍ଲ୍ଲଭ ଦେହୁରି (୩୦) ବିଷ୍ଣୁ ନାୟକ (୩୧) ବିକା ନାୟକ (୩୨) ବିଷ୍ଣୁ ସ୍ୱାଇଁ (୩୩) ଭଗତ ମହାରଣା (୩୪) ପରଶୁରାମ ପାତ୍ର (୩୫) ବିଷ୍ଣୁ ବରାଳ (୩୬) ଗୋବିନ୍ଦ ସୁବୁଧି (୩୭) ରମ ସ୍ୱାଇଁ (୩୮) ପଞ୍ଚୁ ପଧାନ (୩୯) ଯୋଗୀ ଶ୍ରୀଚନ୍ଦନ (୪୦) ଭଗୀରଥି ରାୟ (୪୧) ଉଦ୍ଧବ ବେହେରା (୪୨) ଅର୍ଜ୍ଜୁନ ଦେହୁରୀ (୪୩) ଚଇତନ ମାଝି (୪୪) ଲୋକନାଥ ଚୁହାଲ ସିଂହ (୪୫) ସାଧୁ ମଙ୍ଗରାଜ (୪୬) ବୁଧି ଦେହୁରି (୪୭) ମୃଗା ନାୟକ (୪୮) ଫଗୁ ବଡ଼େଲ (୪୯) ରାଜୀବ ନାୟକ (୫୦) ବରଜୁ ନାୟକ (୫୧) ବୃନ୍ଦା ନାୟକ (୫୨) ବାସୁ ବେହେରା (୫୩) ପଞ୍ଚୁ ନାୟକ (୫୪) ନିଧି ନାୟକ (୫୫) ରଘୁ ନାୟକ (୫୬) ପାଣ୍ଡବ ନାୟକ (୫୭) ବନ୍ଧୁ ନାୟକ (୫୮) କୁସୁନୁ ନାୟକ (୫୯) ପିଣ୍ଡିକ ନାୟକ (୬୦) କେଳୁ ନାୟକ (୬୧) କଣ୍ଡୁରି

ନାୟକ (୬୨) ଦାମ ନାୟକ (୬୩) ବୃନ୍ଦାବନ (୬୪) ଫକୀର ସିଂହ (୬୫) ମହେଶ୍ୱର ପାଇକରା (୬୬) ମୁକ୍ତ ସେଠି (୬୭) ଉଦୟ ହରିଚନ୍ଦନ (୬୮) କୁଞ୍ଜ ଜେନା (୬୯) ଜଗତ ନାୟକ (୭୦) ବୃନ୍ଦାବନ ନାୟକ (୭୧) ମୁକୁନ୍ଦ ନାୟକ (୭୨) ପିଣ୍ଡିକ ନାୟକ (୭୩) ପଦ୍ମ ନାୟକ (୭୪) ବୁଲି ଦାସ (୭୫) ଶ୍ୟାମ ସ୍ୱାଇଁ (୭୬) ଗୌରାଙ୍ଗ ଚୁହାଲ ସିଂହ (୭୭) ଭିକୁ ଦଳାଇ (୭୮) ପୁରୁଷୋତ୍ତମ ସିଂହ (୭୯) ଲକ୍ଷ୍ମଣ (୮୦) ବରଜୁ ଭଞ୍ଜ (୮୧) ରାମ ଦେହୁରି (୮୨) ଭୁଜ ମାଝି (୮୩) ପରମି ଜେନା (୮୪) ନବଘନ ପାତ୍ର (୮୫) ଗୋବିନ୍ଦ ଜେନା (୮୬) କୃପାନିଧି ପାଣି (୮୭) ଗୁଣ ନାୟକ (୮୮) ରୁଷି ପାତ୍ର (୮୯) ମଧୁ ଜେନା (୯୦) ନାରାୟଣ ଦଳେଇ (୯୧) ଭାଗୁ ମାହାନ୍ତ (୯୨) ମହାଦେବ ଜେନା (୯୩) ପିଣ୍ଡିକ ପାତ୍ର (୯୪) ଯୋଗୀ ପାତ୍ର (୯୫) ମଧୁ ପାତ୍ର (୯୬) ବଳଭଦ୍ର ରାୟ (୯୭) ମଧୁ ପଧାନ (୯୮) ନିଳାଦ୍ରି ହରିଚନ୍ଦନ (୯୯) ଲକ୍ଷ୍ମଣ ଚୁହାଲ-ସିଂହ (୧୦୦) ବାଉରି ମହାନ୍ତ (୧୦୧) ଉଦ୍ଧବ ମଳିକ (୧୦୨) ଧ୍ରୁବ ମଳିକ । ଏମାନଙ୍କୁ ଆଲିପୁର ଜେଲକୁ ପଠାଗଲା ।

ପ୍ରଦେଶରୁ ଅସ୍ଥାୟୀ ଭାବରେ ବହିଷ୍କୃତ—

(୧) ରାମ ମଳିକ (୨) ହରି ବେହେରା (୩) ଏକାଦଶୀ ବେହେରା (୪) ଗୋବିନ୍ଦ ମାଝି (୫) ଯୋଗୀ ମଳିକ (୬) ଚୈତନ୍ୟ ସ୍ୱାଇଁ (୭) ହରେକୃଷ୍ଣ ସାହୁ (୮) ଭରତ ନାୟକ (୯) ମାନଶରଣ (୧୦) ରତନ ମଳିକ (୧୧) ନିଧି ମଳିକ ଚୌକିଦାର (୧୨) ରଘୁ ସାହୁ (୧୩) ଚଇଁ ସାହୁ (୧୪) କହ୍ନେଇ ଶତପଥୀ (୧୫) ଦଇତାରି ଶତପଥୀ (୧୬) ରତ୍ନାକର ମିଶ୍ର (୧୭) ବନ୍ଧୁ ସାମଲ (୧୮) ବାସୁ ମଳିକ (୧୯) କଳ୍ପନ ମଳିକ (୨୦) ଖୁରୁଡ଼ି ମଳିକ (୨୧) ବସ୍ତୁ ମଳିକ (୨୨) ସୁଲଭ ମଳିକ (୨୩) ଫକୀର ମଳିକ (୨୪) ବଲ୍ଲଭ ଜେନା (୨୫) ଉତ୍ତମ ନାୟକ । ଏମାନଙ୍କୁ ମେଦିନୀପୁର ଜେଲକୁ ପଠାଗଲା । (୧)

---

(I) Freedom movment in Orissa vol. I

ଅନ୍ୟାନ୍ୟ କାରାଦଣ୍ଡ ଓ ଦ୍ୱୀପାନ୍ତର — ୨୭ ଜଣ ।

ମଧୁ ରାଉତରାୟ, ରୁଖ ସାହୁ, ଧୋବା ଦାସ, କାଳନ୍ଦ୍ର ପାତ୍ର, କେଶବ ସାମଲ, ବନବାସୀ ସାମଲ, ଖୋସାଳ ବଶ୍ୱାଳ, ଶେଖ ସାଇଫୁଲ୍ଲା, ଶେଖ ସରଦାର, ବାଞ୍ଛୁ ଭୋଇ, ଉଦ୍ଧବ ରାଉତ, ଦାମ ଜେନା, ରୂପ ମହାପାତ୍ର, କଂଶୋରୀ ଶୁକ୍ଳ, ଉତ୍ସବ ଗୋଛାଏତ, ଯୋଗୀ ନାୟକ, ଗଉରୀ ଗୋଛାଏତ, ପରମା, ବସ୍ତ୍ରୁ, ଧନା, କୃପା ନାୟକ, ନାରାୟଣ ନାୟକ; କେଳେଇ ନାୟକ । ଏମାନଙ୍କ ସହିତ ନାୟକ, ମହାନ୍ତ ଓ ମହାପାତ୍ର ସାଙ୍ଗିଥିବା ୩ ଜଣ ପରେ ବଦ୍ଧର ହୋଇ ନିମ୍ନଲିଖିତ ବ୍ୟକ୍ତିଙ୍କୁ ଜାବଜ୍ଜୀବନ କାରାଦଣ୍ଡ ଦିଆଗଲା ।

୧-ଭଗବତ ମହାନ୍ତ, ୨-ବଳଭ ରାୟ । ଏମାନଙ୍କୁ ଆଲିପୁର ଜେଲକୁ ପଠାଗଲା ।

ଏହିପରି ଭାବେ ଦମନମୂଳକ କାର୍ଯ୍ୟବିଧାନ କରିବା ପରେ ମଧ୍ୟ ରାଜ୍ୟରେ ଶାନ୍ତି ସ୍ଥାପିତ ହୋଇ ନଥିଲା । ପରେ ପରେ ସରକାରୀ ଅତ୍ୟାଚାର ଓ ରୁପ ଫଳରେ ଆତ୍ମସମର୍ପଣ କରିଥିଲେ ମଧ୍ୟ ଖୋର୍ଦ୍ଧା ଅଞ୍ଚଳରେ ୧୮୨୭ ଏବଂ ବାଣପୁର ଅଞ୍ଚଳରେ ୧୮୩୭ ପର୍ଯ୍ୟନ୍ତ ଗଣ୍ଡଗୋଳ ଲାଗିରହିଥିଲା । ଏହି ଦୁଇଟି ସମୟର ଘଟଣା ବର୍ଣ୍ଣନା ନ କଲେ ପ୍ରବନ୍ଧଟି ଅପୂର୍ଣ୍ଣ ରହିଯିବ ।

ପ୍ରଥମ ଘଟଣାଟି ଘଟିଥିଲା ଖୋରଧାର ତାପଙ୍ଗ ଠାରେ ଏବଂ ଦ୍ୱିତୀୟ ଘଟଣାଟି ଘଟିଲା ବାଣପୁର ଠାରେ । ତାପଙ୍ଗ ଠାରେ ଘଟିଥିବା ଘଟଣାଟି ଅତୀବ ରୋମାଞ୍ଚକର ।

୧୨୩୪ ସାଲ ବୃଷ ୧୦ ଦିନ କର ଆଦାୟ କରିବାକୁ ଫିରଙ୍ଗ କର୍ମଚାରୀମାନେ ତାପଙ୍ଗ ଗଡ଼କୁ ଗଲେ । ପ୍ରଥମେ ଯାଇ ଚନ୍ଦ୍ରାମଣି ରଣସିଂହଙ୍କ ଦୁଆରେ ପହଞ୍ଚି ସେଠାରେ ନାନା ଧମକ ଚମକ ଦେଲେ । ସେତେବେଳକୁ ଚନ୍ଦ୍ରାମଣି ଘରେ ନଥିଲେ । ତାଙ୍କର ସ୍ତ୍ରୀ ହୀରାମଣୀ ରାଗରେ ଜରଜର ହୋଇ ତାଙ୍କୁ ଭର୍ତ୍ସନା କଲେ । ପିଅନ କହିଲା,,କର ପାଇଁ ତୁମ ଘର କୋରକି ହେବ ଏବଂ ସମସ୍ତ କୋରକି ଜିନିଷ ଆମେ ଖୋର୍ଦ୍ଧା ନେଇଯିବୁ । ତାପରେ ହୀରାମଣୀ, ଦୁଆର ଡେଇଁଲେ ହାଣି ଦିଆଯିବ ବୋଲି କହିଲେ । ସଙ୍ଗେ ସଙ୍ଗେ ଏ ଖବର ଗଡ଼ ତାପଙ୍ଗର

ଦଳବେହେରା ମାଧବଚନ୍ଦ୍ର, ରାଉତରାଙ୍କ ପାଖରେ ପହଞ୍ଚିଲା । ସେ ସଙ୍ଗେ ସଙ୍ଗେ କର୍ମଙ୍କୃରୀମାନଙ୍କୁ ଘଉଡ଼ାଇ ଦେବା ପାଇଁ ଭାଗିରଥି ଦଳସିଂହ ଓ ଦଳେଇ ଗୋବର୍ଦ୍ଧନ ବଇରାଗଞ୍ଜନଙ୍କୁ ଆଦେଶ ଦେଲେ । ଗୋବର୍ଦ୍ଧନ ବଇରାଗଞ୍ଜନ ବନ୍ଧୁକ ଟିପି ଦୁଇଜଣ ସିପାହୀଙ୍କୁ ମାରିଦେଲେ । ଏ ଖବର ଯାଇ ଖୋର୍ଦ୍ଧା ସାହେବଙ୍କ ନିକଟରେ ପହଞ୍ଚିଲା । କଟକରୁ ସୈନ୍ୟ ଆଣିବା ପାଇଁ ଖବର ପଠାଗଲା । କର୍ଣ୍ଣେଲ ହାରକୋର୍ଟ ଦଳବେହେରାଙ୍କୁ କର ଦେଇ ଆତ୍ମସମର୍ପଣ କରିବାକୁ ଲେଖିଥିଲେ । ନ ଦେଲେ ୧୨୩୪ ମିଥୁନ ପଞ୍ଚମୀ ଦିନ ଯୁଦ୍ଧକୁ ପ୍ରସ୍ତୁତ ହେବା ପାଇଁ ନିର୍ଦ୍ଦେଶ ଥିଲା ।

ସେହି ଅନୁଯାୟୀ କର୍ଣ୍ଣେଲ ହାରକୋର୍ଟ ସୈନ୍ୟମାନଙ୍କୁ ଧରି ତାପଙ୍ଗ ଗଡ଼ରେ ପହଞ୍ଚିଲେ । ସେଠାରେ ୧୨୩୪ ମିଥୁନ ପଞ୍ଚମୀ ଦିନ ଯୁଦ୍ଧ ହେଲା ।

ଏହି ଲଢ଼େଇରେ ମଲ୍ଲିପଡ଼ା (ମଳପଡ଼ା)ର ଦଳେଇ ଓ ନାରାୟଣ ଗଡ଼ (ନରଣଗଡ଼)ର ଦଳେଇ, ରାମଚଣ୍ଡୀ ଗଡ଼ର ଦଳେଇ ଓ ଦଳପତି, ସରେଇ ଗଡ଼ରୁ ପାଇକ, ଛତମାଗଡ଼ରୁ ପ୍ରଧାନ ପାଇକ ଓ ଦଳେଇ, ରଥିପୁର ଗଡ଼ରୁ ଯୋଦ୍ଧାମାନେ, କାଇପଦର ଗଡ଼ରୁ ପାଇକ, ଦଧିମାଛ ଗାଡ଼ିଆର କରଣ ମଧୁସୂଦନ, ବର୍ଗିଦା, କଞ୍ଚିଲୋ, ଝିଙ୍କିଝାରର କରଣ ଧନୁର୍ଜୟ ଶ୍ରୀଚନ୍ଦନ ଓ ଅଣ୍ଡାର କୋଠକରଣମାନେ ଯୋଗ ଦେଇ ଥିଲେ ।

ଗଡ଼ ତାପଙ୍ଗର ଭାଗୀରଥି ଦଳାଇ, ପ୍ରତାପସିଂହ, ବୈରାଗଞ୍ଜନ, ଗୋବର୍ଦ୍ଧନ ଦଳେଇ, ରଣ ସିଂହ ପ୍ରଭୃତି ଯୁଦ୍ଧରେ ପ୍ରଧାନ ଅଂଶ ଗ୍ରହଣ କରିଥିଲେ ।

କାଣ୍ଡଗୋଦା ଠାରେ ଲଢ଼େଇ ହେଲା । ଯୁଦ୍ଧ ପାଞ୍ଚ ଦିନ ଧରି ଚାଲିଲା । ତାପରେ ପାଇକମାନେ ଫିରିଙ୍ଗିମାନଙ୍କର ତୋପ ଓ କମାଣ ମାଡ଼ରେ ଛତଭଙ୍ଗ ଦେଲେ । ବହୁ ସୈନ୍ୟ ଉଭୟ ପକ୍ଷରୁ ହତାହତ ହେଲେ ।

ମାଧବ ଚନ୍ଦ୍ର ଜଣିବାର କୌଣସି ଉପାୟ ନ ଦେଖି ତାଙ୍କର ଶ୍ୱଶୁର ଗଡ଼ ବଡ଼ପାଗ୍ରର ଭ୍ରମରାଙ୍କ ଘରେ ଆତ୍ମଗୋପନ କରି ରହିଲେ ।

ସେହି ସମୟରେ ଚିଲିକା କୂଳରେ ଲୁଣମରା ଜବତ କରିବାପାଇଁ ଗୋରା ସୈନ୍ୟମାନେ ଲୁଣମରାଳଙ୍କ ଉପରେ ନାନା ଅତ୍ୟାଚାର କରୁଥିଲେ । ଏହି ଖବର ପାଇ ଦିନେ ମାଧବଚନ୍ଦ୍ର ଚିଲିକା କୂଳରେ ଦୁଇଜଣ ସିପାହୀଙ୍କୁ ବନ୍ଧୁକ ଟିପି ହତ୍ୟା କଲେ । ଏହି ଲଢ଼େଇରେ

ଯୋଗ ଦେଇଥିବା ମଧୁସୂଦନ ବିଶ୍ୱାସଘାତକତା କରି ଖୋର୍ଦ୍ଧା ଆସି ସାହେବଙ୍କ ନିକଟରେ ସମସ୍ତ ତଥ୍ୟ ପରିବେଷଣ କରିବାରୁ ତାଙ୍କୁ ପୁରସ୍କାର ଓ ନିଷ୍କର ବୃତ୍ତି ଦିଆଯାଇଥିଲା ।

ଏହି ମଧୁସୂଦନଙ୍କ ଜରିଆରେ ଖୋର୍ଦ୍ଧା ସାହେବ ମାଧବଚନ୍ଦ୍ର ବଡ଼ପାଖରେ ଥିବା କଥା ଜାଣି, ଖୋର୍ଦ୍ଧାରୁ ଦଳେ ସୈନ୍ୟ ପଠାଇଲେ ଏବଂ ସେମାନେ ବଡ଼ପାଖରେ ଘାଟି କରି ରହିଲେ । କିନ୍ତୁ ବହୁ ଚେଷ୍ଟା ସତ୍ତ୍ୱେ ସେମାନେ ମାଧବଚନ୍ଦ୍ରଙ୍କୁ ଧରି ପାରିଲେ ନାହିଁ । ମାଧବଚନ୍ଦ୍ର ଏ ଖବର ପାଇ ଜଙ୍ଗଲରେ ଲୁଚି ରହିଥିଲେ । ଏହାଙ୍କୁ ଜୀବିତ ବା ମୃତ ଅବସ୍ଥାରେ ଧରିବାପାଇଁ ପୁରସ୍କାର ଘୋଷଣା କରାଗଲା ।

ଦିନେ ସୋରଣ ଗ୍ରାମର ଜଣେ କେଉଟ ବାଟରେ ମାଧବଚନ୍ଦ୍ରଙ୍କୁ ଭେଟିଲା । ମାଧବଚନ୍ଦ୍ର ତାକୁ ପଚାରିବାରେ ସେ କହିଲା ଯେ, ତାର ନାଆଟି ବୁଡ଼ିଯାଇଛି ଏବଂ ଘର ପୋଡ଼ି ଯାଇଛି । ତେଣୁ ସେ ତାପଙ୍ଗ ଦଳ-ବେହେରାଙ୍କ ପାଖକୁ କିଛି ସାହାଯ୍ୟ ପାଇଁ ଯାଉଛି । ମାଧବ ରାଉତରା ଏହି ଲୋକଟିର ଦୁଃଖରେ କାତର ହୋଇ ତାକୁ ଧରି ଖୋରଧାରେ ପହଞ୍ଚି କଚେରୀରେ ହାଜର ହୋଇ ହାକିମଙ୍କୁ କହିଲେ, ଏହି ଲୋକଟି ତାଙ୍କୁ ଧରି ଆଣିଛି, ତେଣୁ ତାକୁ ପୁରସ୍କାର ଦିଆଯାଉ ।

ଉଭୟଙ୍କୁ ଗିରଫ କରାଯାଇ ହାଜତରେ ରଖାଗଲା ପରେ ଉପରିସ୍ଥ ହାକିମଙ୍କୁ ଲେଖାଲେଖି ପରେ ମାଧବଙ୍କୁ ମୁକ୍ତକରି ଦିଆଗଲା । ଏହି ବିଷୟବସ୍ତୁ ଗୋଟିଏ ପୁରୁଣା ତାଳପତ୍ର ପୋଥିରେ ଲିପିବଦ୍ଧ ହୋଇଅଛି । ଏହା ଏହି ପ୍ରବନ୍ଧର ପରିଶିଷ୍ଟରେ ଦିଆଯାଇଛି । ଏହି ପୋଥିର ରଚନା କାଳ ଓ ଅନ୍ୟାନ୍ୟ ବିଷୟ ସ୍ପଷ୍ଟ ରୂପେ ଜାଣିବାପାଇଁ କେତେକ ପଦ ଉଦ୍ଧୃତ ହେଲା ।

"ପୁରୀଜିଲ୍ଲା ମଧ୍ୟେ ଅଟେ ସାନପୁଟ ଗଡ଼,
ତାହା ମଧ୍ୟରେ ବାସ ଅଟଇ ମୋହର ।
ଶ୍ରୀ ମଧୁସୂଦନ ବିପ୍ର ଅଟେ ମୋର ନାମ,
ବେଲେଶ୍ୱର ଦେବଙ୍କୁ ମୁଁ କଲି ଆରାଧନ ।

× × ×

୧୨୬୨ ସାଲେ ଗ୍ରନ୍ଥ ହେଲା ଶେଷ,
ମେଷ ପଚଶଦ୍ଦିନ ଯେ ବୁଧ ହେ ବିଦୁଷ ।

× × ×

ଗଡ଼ ତାପଙ୍ଗର ଘଟଣା ପର ୧୮୩୭ ରେ ବାଣପୁରରେ ପୁଣି ଏକ ବିଦ୍ରୋହ ସଂଘଟିତ ହୋଇଥିଲା । ବକ୍‌ସି ଜଗବନ୍ଧୁ, ଦେବାନ ଓ ଅନ୍ୟାନ୍ୟମାନେ ଆତ୍ମସମର୍ପଣ କରିଥିଲେ ମଧ୍ୟ ଖୋର୍ଦ୍ଧା ଓ ବାଣପୁର ଅଞ୍ଚଳର ଲୋକଙ୍କ ମନରୁ ବ୍ରିଟିଶ ପ୍ରତି ଘୃଣାଭାବ ଦୂର ହୋଇ ନଥିଲା । ତେଣୁ ସ୍ଥାନେ ସ୍ଥାନେ ପୁଣି ବିଦ୍ରୋହ ମୁଣ୍ଡଟେକି ଉଠୁଥିଲା ।

(୧) ୧୮୩୭ ଜୁନ ମାସରେ ଅରାଙ୍ଗର ବିଦ୍ରୋହୀମାନଙ୍କର ଏକ ବୈଠକ ବସିଲା । ଏଥିରେ ଅରାଙ୍ଗ ଦଳବେହେରା କୃତ୍ତିବାସ ପାଟସାହାଣୀ, ଲୋଚନ ବଶୋଇ, ଶିବ ବଶୋଇ, ପଞ୍ଚାନନ ନାୟକ, ସାଧୁ ଜାନ, ଘନା ଜାନ ପ୍ରଭୃତି ନେତାମାନେ ଉପସ୍ଥିତ ଥିଲେ । ବିଦ୍ରୋହ ପାଇଁ, ପଞ୍ଚାନନ ନାୟକଙ୍କୁ ସମସ୍ତେ ନେତା ନିର୍ବାଚିତ କଲେ ଏବଂ କୃତ୍ତିବାସ ପାଟସାହାଣୀ ତାଙ୍କର ପାଟମନ୍ତ୍ରୀ ଓ ସେନାପତି ମନୋନୀତ ହେଲେ । ପ୍ରଥମେ ବାଣପୁରରୁ ବ୍ରିଟିଶ ଶାସନ ଲୋପ ହେଲା ବୋଲି ଘୋଷିତ ହେଲା ଏବଂ ପଞ୍ଚାନନ ବାଣପୁରର ରାଜା ବୋଲି ଘୋଷିତ ହେଲେ ।

ଏମାନେ ୧୮୩୭ ଜୁନମାସ ୪ ତାରିଖ ଦିନ ମାଳରୁ ଓହ୍ଲାଇ ଆସି ଜୁନ୍ ୫ ତାରିଖ ଦିନ ବାଣପୁର ସହର ଆକ୍ରମଣ କଲେ । ଏହି ସମୟରେ ବୃତ୍ତିଭୋଗୀ ଦଳେଇ ଓ ଦଳବେହେରାମାନେ ସାହାଯ୍ୟ ନ ପଠାଇବାରୁ ପୋଲିସମାନେ ଥାନା ଛାଡ଼ି ପଳାଇଲେ । କିନ୍ତୁ ସେ ଦିନର ଗୁଳିବିନିମୟରେ ସରକାରୀ ପକ୍ଷର ଜଣେ ମଲେ ଏବଂ ଦୁଇଜଣ ଆହତ ହେଲେ ।

ପୋଲିସମାନେ ପଳାଇବାରୁ ବିଦ୍ରୋହୀମାନେ ଉତ୍ସାହିତ ହୋଇ ଲୁଣ ଫାଣ୍ଡି ଓ ପ୍ରଧାନ ପ୍ରଧାନ ବ୍ୟବସାୟୀଙ୍କ ଘରେ ପଶି ସବୁଦ୍ରବ୍ୟ ଲୁଟି କରି ନେଲେ ।

ତାପରେ ଏହି ବିଦ୍ରୋହୀ ପାଇକଦଳ ଟାଙ୍ଗିଥାନା ଆକ୍ରମଣ କରିବାକୁ ସଜ ହେଲେ । ଏହାର ପ୍ରତିକାର ପାଇଁ ସରକାର ରଣପୁର, ନୟାଗଡ଼ ଓ ଘୁମୁସରର ରଜାମାନଙ୍କ ସାହାଯ୍ୟ ଲୋଡ଼ିଲେ ।

ଏହି ବିଦ୍ରୋହୀ ଦଳଙ୍କୁ ଧରିବାପାଇଁ ଗଞ୍ଜାମର ଆଠଗଡ଼ ଜମିଦାରଙ୍କୁ ଦକ୍ଷିଣର ସବୁବାଟ ବନ୍ଦକରି ଦେବାକୁ ଆଦେଶ ହେଲା । ଘୁମୁସର ମାଳ ଅଞ୍ଚଳରେ ଘୁମୁସରର ରାଜାଙ୍କ ମେଳି ଦମନ କରିବା ପାଇଁ ସରକାର ମେଜର ରସେଲ୍‌ଙ୍କୁ ନିଯୁକ୍ତ କରିଥିଲେ । ଘୁମୁସର ଆଉ

(୧) ଗତ ଶତାବ୍ଦୀର ଓଡ଼ିଶା—ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ।

ପଶ୍ଚିମରୁ ବିଦ୍ରୋହୀମାନଙ୍କୁ ତଡ଼ି ଆଣିବାପାଇଁ ଆଦେଶ ହେଲା । ରସେଲ୍ ସାହେବ ଓ ଆଠଗଡ଼ ଜମିଦାର ୫୦୦ ସିପାହୀ ଧରି ଦକ୍ଷିଣ ଓ ପଶ୍ଚିମରୁ ଅଭିଯାନ କରିବା ପାଇଁ ସିଦ୍ଧାନ୍ତ ହେଲା ।

ବାଣପୁର ରାଜା ଓ ନୟାଗଡ଼ ରାଜାମାନେ ପ୍ରତ୍ୟେକେ ୫୦୦ କରି ସିପାହୀ ପଠାଇ ଦେଲେ । ଏମାନେ ଟାଙ୍ଗିରେ ରହିଲେ ।

ବଡ଼ଲାଟଙ୍କ ମତ ଅନୁଯାୟୀ ଏହି ଆକ୍ରମଣ ସ୍ଥଗିତ ରହିଲା । ଟାଙ୍ଗି ଓ ବାଣପୁରରେ ସିପାହୀଙ୍କ ସଂଖ୍ୟା ବୃଦ୍ଧି କରାଗଲା ।

ଏହି ବ୍ୟବସ୍ଥାରେ ଖୁମପୁରଠାରେ ପଣ୍ଡୁନାୟକ ଓ ତାଙ୍କର ପ୍ରଧାନ ପ୍ରଧାନ ସହକର୍ମୀମାନେ ଧରା ପଡ଼ିଲେ । ମୋଟ ଉପରେ ୧୨୩ ଜଣଙ୍କ ବିରୁଦ୍ଧରେ ମକଦ୍ଦମା ରୁଜୁ ହେଲା । ଯେଉଁମାନେ ଆତ୍ମସମର୍ପଣ କଲେ ସେମାନଙ୍କୁ କ୍ଷମା ମିଳିଲା ।

ପଣ୍ଡୁନାୟକ, କୃତ୍ତିବାସ ପାଟଶାଣୀ, ଲୋଚନ ବିଶୋଇ, ସାଧୁଜାନି, ଘନାଜାନି ଏ ପାଞ୍ଚଜଣଙ୍କ ଛଡ଼ା ଅନ୍ୟମାନଙ୍କୁ ଜୀବନ ରକ୍ଷାର ପ୍ରତିଶ୍ରୁତି ମିଳିଲା ।

କୃତ୍ତିବାସ ଓ ପଣ୍ଡୁ ପ୍ରାଣଦଣ୍ଡ ପାଇଲେ । ଏମାନଙ୍କ ସହ ଆଉ କେତେଜଣ ମଧ୍ୟ ଫାଶୀ ପାଇଲେ । ଯେଉଁ ଦଳେଇ ଦଳବେହେରାମାନେ ଦଣ୍ଡ ପାଇଲେ ସେମାନଙ୍କ ଜାଗିରି ଖାସ କରି ଦିଆଗଲା ।

ଏ ପର୍ଯ୍ୟନ୍ତ ମିଳିଥିବା ଘଟଣାବଳୀରୁ ଜଣାଯାଏ ଯେ, ଏହିପରି ଭାବେ ଇତିହାସ ପ୍ରସିଦ୍ଧ ପାଇକ ବିପ୍ଳବର ଅବସାନ ହେଲା ।

ସମଗ୍ର ଭାରତବର୍ଷରେ ଏହି ଖୋର୍ଦ୍ଧା ଅଞ୍ଚଳରେ ଇଂରେଜମାନେ ପ୍ରଚଣ୍ଡ ଆଘାତ ପାଇଥିବାରୁ ଓଡ଼ିଆ ଜାତିକୁ ସେମାନେ ପ୍ରଚଣ୍ଡ ଭାବେ ଆଘାତ କଲେ ଏବଂ ଏହି ଦୁର୍ଦ୍ଧର୍ଷ ସ୍ୱାଧୀନଚେତା ଜାତିକୁ ପଙ୍ଗୁ କରି ଦେବାପାଇଁ ଜାଣିଶୁଣି ସେମାନେ ଚେଷ୍ଟା କଲେ । ଫଳରେ ଗୋଟାଏ ବୀରଜାତିର ଲୋକଙ୍କୁ ସେମାନେ ହୀନ୍ୟ ଶ୍ରେଣୀ ଭୁକ୍ତ କଲେ ନାହିଁ କମ୍ବା ଶିକ୍ଷା ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଦେଲେ ନାହିଁ ।

ସେହି ଓଡ଼ିଆଜାତି ଏହିପରି ଭାବେ ଦୀର୍ଘ ଏକଶତାବ୍ଦୀ ବ୍ୟାପି ପଡ଼ିରହିବା ପରେ ପୁନରାୟ କଂଗ୍ରେସର ଡାକରେ ଚେଇଁ ଉଠିଲା । ଯେଉଁ ଅସହଯୋଗ ପାଇଁ ଜଗବନ୍ଧୁ ଡାକଦେଇଥିଲେ ୧୮୧୭ ରେ, ସେହି ବାଣୀ ସତେ ଯେପରି ୧୯୨୧ ରେ ଅନ୍ୟ ରୂପରେ ଧ୍ୱନିତ ହୋଇ ଉଠିଲା ମହାତ୍ମା ଗାନ୍ଧିଙ୍କ ବ୍ରିଟିଶ ବିରୁଦ୍ଧରେ ଅସହଯୋଗରେ ଡାକରାରେ ।

# ଫିରିଙ୍ଗି କଳି ଭାରତ

## (ଖୋରଧା ଚକଡ଼ା)

## ଗଡ଼ ଡାପଙ୍ଗ ଯୁଦ୍ଧ

ନମସ୍ତେ ମା ହସ୍ତେଶ୍ୱରୀ ଦୁର୍ଗତି ନାଶିନୀ
କର ଅନୁଗ୍ରହ ବାରେ ଖପର ଧାରିଣୀ
ଗଡ଼ ଡାପଙ୍ଗ ଦୁର୍ଗର ଉତ୍ତର ଦିଗରେ
ନିଶଙ୍କରେ ବସିଅଛୁ ପୁଷ୍କରଣୀ ତୀରେ
ଦ୍ରୁମମାନେ ଅଛନ୍ତି ହୋଇଣ ଧାଡ଼ି ଧାଡ଼ି
କୁନ୍ଦ ମନ୍ଦାର ମାଳତୀ ଧରିଛନ୍ତି କଢ଼ି
ବଟ, ପଳାଶ, ଆମ୍ବ ପଣସ ପିପ୍‌ପଳ
ପାଚି ଝଡ଼ୁଅଛି ନାନା ଜାତି ସ୍ୱାଦୁଫଳ
ଅତିହିଁ ଗହନ ବନ ଅଦୃଶ୍ୟ ଅଂଶୁମାଳୀ
ତହିଁ ବିଦ୍ୟମାନ ଥାଇ କରୁଅଛି କେଳି
ପୂର୍ବେ ଜବନମାନଙ୍କୁ ନପାରିଲୁ ଭୁଝି
କ୍ଷତ୍ରିୟ ମସ୍ତକେ ବନ୍ଧାଇଲୁ ଶାଢ଼ୀ ନେଇ
ତୋର ଦୟାବଳେ ମୂର୍ଖ ହୁଅଇ ପଣ୍ଡିତ
କ୍ଷତ୍ରିୟ ଭାବିଲେ ଶତ୍ରୁ କରାଉ ନିହତ
କିଞ୍ଚିତରେ ଅନୁଗ୍ରହ କର ମାତ ମୋତେ
ଗଡ଼ଡାପଙ୍ଗ ଯୁଦ୍ଧ ମୁଁ ଲେଖିବି ଭାରତେ
ତୋର ମହିମା ଦେଖିଣ ପୁରୀ ଗଜପତି
ବଂଶ ଦୁଇମାଣ ଜମି ଭୋଗକୁ ଖଞ୍ଜନ୍ତି ।
ଜୟମାତ ଦୁର୍ଗେ ହିମବନ୍ତର ଦୁଲଣୀ
ବିପ୍ର ମଧୁସୂଦନର ପୁରାଅ କାମନା
କହୁଛନ୍ତି ସଦାଶିବ ଶୁଣ ଗୋ ଗଉରୀ
ଗଡ଼ଡାପଙ୍ଗର ଯୁଦ୍ଧ କହୁଛି ବିସ୍ତାରି ।
ଖୋରଧା ଚବିଶଗଡ଼େ ହୋଇଲା ବିଭକ୍ତ
ବାଇଶି ଗ୍ରାମ ନେଇ ଚକଡ଼ା ବିଖ୍ୟାତ

ଜନାର୍ଦ୍ଦନ ବିଦ୍ୟାଧର କଲେ ବିଂଶ ଭାଗ
ଏପର ପୂର୍ବରୁ ଅଛୁ ଖୋଇଧା ପ୍ରସ୍ତାବ
ରାମଚନ୍ଦ୍ର ଦେବଙ୍କ ପୁତ୍ର ଯେ ଶ୍ରୀ ବୀର କେଶୋର
ତାଙ୍କ ପୁତ୍ର ଦିବ୍ୟସିଂହ ହୋଇଲେ ପ୍ରଚୁର
ସର୍ବ ଗୁଣରେ କୁଶଳ ଦିବ୍ୟସିଂହ ଦେବ
ଅଷ୍ଟ ଅଇସୂର୍ଯ୍ୟ ଭୋଗ କରନ୍ତି ସେ ସବ
ବୀରପଣେ ଅଟନ୍ତି ସେ ଅର୍ଜ୍ଜୁନ ସମାନ
ଶତ୍ରୁବଳଙ୍କର ଦର୍ପ କରନ୍ତି ଗଞ୍ଜନ
ଦାମୀପଣେ କର୍ଣ୍ଣ ପର ଅଟନ୍ତି ସେ ଦାମୀ
ଜଗନ୍ନାଥ ପଦେ ସଦା ହୋଇଥାନ୍ତି ପ୍ରେମି
ଦିବ୍ୟସିଂହ ଦେବଙ୍କର ନବମ ଅଙ୍କରେ,
ଆସିଲେ ଜବନମାନେ ମିଳିଲେ ଉତ୍କଳେ ।
ନାନାଦି ଉତ୍ପାତମାନ ଘଟାଇଲେ ବଳେ
ପରଧନ ପରନାରୀ ଲୁଟିଲେ ସେ ହେଳେ
ଦୂତ ଯାଇ ଜଣାଇଲା ଗଜପତି ପାଶ
ଯବନମାନେ ମିଳଣ ରାଜ୍ୟ କଲେ ନାଶ
ତାପଙ୍ଗଗଡ଼ୁ ଡକାଇ ନେଲେ ବେନି ବୀର
ନାରାୟଣ ରାଉତରା ନାମ ଯେ ତାଙ୍କର
ନାରାୟଣ ରାଉତରାଙ୍କ ସାନ ଭାଇ
ନରସିଂହ ରାଉତରା ନାମ ଯେ ଅଟଇ
ବେନି ବୀରେ ଖୋର୍ଦ୍ଧାଗଡ଼େ ହୋଇଲେ ପ୍ରବେଶ
ଦେଖି ଗଜପତି ତାଙ୍କୁ ଦେଲେ ଯେ ଆଦେଶ
ଯବନମାନଙ୍କୁ ବେଗେ କର ହେ ବିନାଶ
ଅତି ଅନ୍ୟାୟେ ଉଜାଡ଼ୁଛନ୍ତି ଦେଶ ଘୋଷ
ନାରାୟଣ ରାଉତରା ଦୁଇ ସଙ୍ଗତରେ
ସେନା ସଇନ ଘେନିଣ ଗମିଲେ ସେ ଖରେ
ଯବନ ବଳଙ୍କ ସଙ୍ଗେ ଘୋର ରଣ କଲେ
ହାରିଣ ଯବନ ଏଣେ ତେଣେ ପଳାଇଲେ
ନାରାୟଣ ରାଉତରାଙ୍କ ନାମ ଅନୁସାରେ
ନାରାୟଣ ଗଡ଼କୁ ଯେ ବସାଇଲେ ଖରେ ।

ପୁନଶ୍ଚ ଯବନମାନେ ହୋଇ ଏକ ମେଳ
ମୁକୁନ୍ଦପୁର ଶାସନେ ହୋଇଗଲେ ଠୁଳ
ବ୍ରାହ୍ମଣମାନଙ୍କ ଯଜ୍ଞ କରଣ ଭଗନ
ଚର ଯାଇ ଜଣାଇଲା ରାଜା ସନ୍ନିଧାନ
ନରସିଂହ ରାଉତରାୟ ତହିଁ ସେନାପତି
ଯବନମାନଙ୍କୁ ବଳେ ଦେଲେ ସେ ନିପାତି
ଦକ୍ଷିଣ ଦିଗକୁ ତାଙ୍କୁ ଘଉଡ଼ାଇ ଦେଲେ
ଗଜପତିଙ୍କ ନିକଟ ପ୍ରବେଶ ହୋଇଲେ
ତାଙ୍କ ଯୁଦ୍ଧ ତାପ ଶୁଣିଣ ନରେଶ୍ୱର
ଗଡ଼ତାପଙ୍ଗ ଦୁର୍ଗକୁ ରଚିଲେ ନିକର ।
ଏହି ସାମନ୍ତ ବଂଶେ ଜନ୍ମ ଶ୍ରୀ ମାଧବଚନ୍ଦ୍ର
ଗୁଣାଗୁଣେ ସୁନ୍ଦର ଯେହ୍ନେ ଶରତର ଚନ୍ଦ୍ର
ବିଦ୍ୟା ପଢ଼ି ହୋଇଲେ ସେ ଅତି ଯୋଗ୍ୟବାନ
ପୁଣି ଅସ୍ତ୍ରବିଦ୍ୟାରେ ସେ ହେଲେ ପାରଙ୍ଗମ
ଦିବ୍ୟସିଂହଦେବ ପରେ ଶ୍ରୀ ମୁକୁନ୍ଦଦେବ
ରାଜା ହୋଇ ପାଳୁଥିଲେ ଉତ୍କଳ ଉତ୍ସବ
ଏହି ବେଳେ ସାମନ୍ତ ଶ୍ରୀ ମାଧବଚନ୍ଦ୍ର
ଦୟାବାନ ବୀରତ୍ୱରେ ଯଥା ସ୍ୱର୍ଗେ ଇନ୍ଦ୍ର
ପେଷିକସି ପାଇ ରାଜା ପୁରୀରେ ରହିଲେ
ନାନା ଅତ୍ୟାଚାରମାନ ଫିରିଙ୍ଗି ଯେ କଲେ ।
ବଳେ ପ୍ରଜା ଧନମାନ ମହତ୍ତ୍ୱ ହାରିଲେ
ମଦ ମାଂସ ଖାଇ ଅତି ଦୁର୍ମତ୍ତ ଯେ ହେଲେ
ନାନାବିଧ କର ବସାଇ ପ୍ରଜାଙ୍କୁ ପିଡ଼ିଲେ
ପାଇକମାନଙ୍କ ପ୍ରତି ଅତ୍ୟାଚାର କଲେ •
କହଇ ମଧୁସୂଦନ ହେ କଳା ଶ୍ରୀମୁଖ
ଦେଉଳେ ବସିଣ ତୁମ୍ଭେ ହୋଇଗଲ ମୂକ
ଏଥୁଅନ୍ତେ ବୁଧଜନେ ଶୁଣ ଦେଇ ମନ
ଦଶବର୍ଷ ଏହିପରି ଗଲା ଯେ ବହିଣ
ବାରଶ ଚୌବିଶ ସାଲ ବୃଷ ଦଶଦିନ
କର ଆଦାୟେ ଚଳିଲେ ଫିରିଙ୍ଗି ସଇନ

ପଚ୍ଛଶ ଜଣ ସଇନ ସଙ୍ଗରେ ଧଇଣ
ବାଜଚଡ଼ି ମୁନସି ଯେ ପହଞ୍ଚିଲେ ପୁଣ ।
ଗଡ଼ ଚାପଙ୍ଗ ଗ୍ରାମରେ ହୋଇଲେ ପ୍ରବେଶ
ଚନ୍ଦ୍ରାମଣି ରଣସିଂହ ଦୁଆରର ପାସ
ନାନା କଟୁକଥା ତହିଁ କଇଲେ ପ୍ରକାଶ
ମଦମତ୍ତ ଅଟନ୍ତି ଯେ ସେ ଦୁଷ୍ଟରାକ୍ଷସ
ଚନ୍ଦ୍ରାମଣି ରଣସିଂହ ଗୃହରେ ନଥିଲା
ତାର ଭାର୍ଯ୍ୟା ହୀରାମଣି ଶୁଣିଣ କୋପିଲା ।
ସେ ବୀର ରମଣୀ କରେ ଧରି ଖଣ୍ଡା
ଦ୍ୱାର ବନ୍ଧେ ଆସିଣ ହେଲା ପରଚଣ୍ଡା
ବୋଇଲା କିଏ ରେ ତୁମ୍ଭେ ଅଟରେ ପାମର
ଏହା ଶୁଣି ପିଓନ ଯେ ଦିଅଇ ଉତ୍ତର
ଫିରିଙ୍ଗି କର ଅଦାୟକାରୀ ଅଟୁ ଆମ୍ଭେ
କର ନ ଦେଇଣ କଥା କହୁଅଛୁ ଦମ୍ଭେ
ଏକ୍ଷଣି ଘର ତୋହର କରିଣ ତଲସ
ଧରନେବୁ ଆମ୍ଭେ ସାହେବଙ୍କ ପାସ
ଏହା ଶୁଣି ବୀରନାରୀ କରଇ ଉତ୍ତର
ଘରେ ପ୍ରବେଶିଲେ ତୁମ୍ଭେ କାଟିଦେବି ଶିର
ଆମ୍ଭରାଜା ମାଧବ ଯେ ନେଉଛନ୍ତି କର
ଫିରିଙ୍ଗି ଅଟଇ ପୁଣି କେବଣ ପାମର
ଏ ସମୟେ ରାଉତରା ଗୃହମଧ୍ୟେ ଥିଲେ
ବାର୍ତ୍ତା ପାଇ ଚଢ଼ପାଡ଼ୀ ଦୁଆରେ ମିଳିଲେ
ଦଳାଇ ଗୋବର୍ଦ୍ଧନ ବଇରୀ ଗଞ୍ଜନ
ଭଗିରଥି ଦଳସିଂହ ମିଳିଲେ ଆସିଣ
ସାମନ୍ତ ମାଧବଚନ୍ଦ୍ର ହୋଇ କୋପଭର
ବୋଇଲେ ଏ ଦୁଷ୍ଟଙ୍କୁ ଘଉଡ଼ାଇ ମାର
ଆଜ୍ଞାପାଇ ସମସ୍ତେ ଯେ ଘରେ ଗଲେ ଚଳି
ନାନା ଅସ୍ତ୍ର ଶସ୍ତ୍ରମାନ ଆଣିଲେ ଉଚ୍ଛୁଳି
ପ୍ରତାପସିଂହ ପ୍ରତାପେ ହୋଇଲେ ବାହାର
ବେନି କରେ ଧନୁ ଶର ରାଗରେ ଜର୍ଜ୍ଜର

ପଞ୍ଚସେନାପ୍ପ ପାଟଖଣ୍ଡା ଧରି କରେ
ଖୀର କେଶ ଆଉଁଷିଣ ଅତି କ୍ରୋଧଭରେ
ବନ୍ଧୁକ, କମାଣ, ଗୁପ୍ତି ଶାଣଦିଆ ଧୂପ
ସମସ୍ତେ ପ୍ରବେଶ ହେଲେ ଗୋରାଙ୍କ ସମୀପ
ଖୀର ଡାକେ ଚମକୁଛି ଯେ ତାପଙ୍ଗ ଦୁର୍ଗ
ଗୋରାମାନେ କହିଲେ ଯେ ପଡ଼ିଲା ଦୁର୍ଯୋଗ ।
ଭୟ ପାଇ ଗୋରାମାନେ ବେଗେ ପଳାଇଲେ
ଗୋଡ଼ାଇଣ ଖୀରମାନେ ତାହାଙ୍କୁ ମାରିଲେ
ଦଳାଇ ଗୋବର୍ଦ୍ଧନ ବଇରିଗଞ୍ଜନ
ବନ୍ଧୁକ ଟିପି ମାଇଲେ ଦୁଇ ଗୋରା ସୈନ୍ୟ ।
ତହୁଁ ଗୋରା ସୈନ୍ୟମାନେ ପଳାଇଣ ଗଲେ
କେତେକ ଆଘାତ ପାଇ ବାଟରେ ପଡ଼ିଲେ
ଖୋରଧା ସାହେବ ଆଗେ ସକଳ ବୃତ୍ତାନ୍ତ
ବୁଝାଇ କହୁଁ ସାହେବ ହୋଇଲା କୁପିତ
କହିଲା ତାପଙ୍ଗଗଡ଼ ନ କଲେ ଶାସନ
ଖୋରଧା ରାଜ୍ୟଶାନ୍ତି ନ ହେବ ଗ୍ଭଳନ
କଟକ ସାହେବ ପାଶେ ଦୂତ ବରଗିଲା
ସେନାପତି କର୍ଣ୍ଣେଲଙ୍କୁ ସାହେବ ପେଶିଲା ।
ଅଳ୍ପ ସଇନ ଧରି କର୍ଣ୍ଣେଲ ହାରବଟ (ହାରକଟ ? )
ପ୍ରବେଶ ହେଲା ଖୋରଧା ସାହେବ ନିକଟ
ସବୁକଥା ଶୁଣି ରାଗେ ହେଲା ଜରଜର
ବୋଇଲା ତାପଙ୍ଗ ଗଡ଼େ ପେଶ ବେଗେ ଗ୍ଭର ।
ଶୁଣିଣ ସାହେବ ମୁଦ ବେଗରେ ଲେଖିଲା
ଦୂତ ହସ୍ତେ ଦେଇ କର୍ଣ୍ଣେଲ ପାଶରେ ବହିଲା
ବାରଶ ଚଉବିଶ ସାଲ ବୃଷ ହଂଶ ଦିନ
ଗ୍ଭର ଯାଇ ପହଞ୍ଚିଲା ତାପଙ୍ଗ ଦୁର୍ଗେଣ ।
ଶ୍ରୀ ସାମନ୍ତ ମାଧବଚନ୍ଦ୍ରେ ଦେଇଣ ପତର
କରଯୋଡ଼ ଦୂତ ବେଗେ କରିଲା ଜୁହାର
ଦଳବେହେରା ବେଗେ ପତର ଫେଡ଼ିଣ
ଦଳାଇ ଦଳଲୋକଙ୍କୁ ପାଖକୁ ଡାକିଣ

ସୈନ୍ୟ ସେନାମାନେ ସର୍ବେ ହୋଇ ଏକମେଳ
ଫିଟାଇଣ ପଢ଼ିଲେ ସେ ସାହେବ ପତର
ଲେଖିଛୁ ସାହେବ ଅତି କ୍ରୋଧଭର ହୋଇ
କର, ନ ଦେଇ ନାଶିଲ ଆମ୍ଭ ସୈନ୍ୟ ଦୁଇ
ଯୁଦ୍ଧେ ଯାହାଙ୍କୁ ହାରିଲା ଗଜପତି ରାଣ
ତା ସଙ୍ଗେ ବିବାଦ ତୁମ୍ଭେ ହୁଅ ଅକାରଣ
ଜୀବନରେ ଆଶା ଥିଲେ ଆସ କର ଦିଅ
ଶରଣ ପଶିଣ କ୍ଷମା ଶୀଘ୍ର ମାଗିନିଅ
ନୋହିଲେ ଯୁଦ୍ଧ ପାଇଁକି ହୁଅ ଅଗ୍ରସର
ଘୋଷଣା ଦେଲୁ ମିଥୁନ ପଞ୍ଚମୀ ଦିନର
ସମସ୍ତ ପଢ଼ିଣ ବେଗେ ମୁଦ ଶର ଦେଲେ
ଶ୍ରୀ ସାମନ୍ତ ରାଉତରାୟ ମହାକ୍ରୋଧଭରେ
ବୋଇଲେ କେବେହେଁ ଆମ୍ଭେ ନ ଦେବୁଟି କର
ମରିବୁ ପଛେ ସମର କରିବୁ ନିକର ।
ଏହା ଶୁଣି ଦୂତ ବେଗେ ତହୁଁ ଚଳିଗଲେ
ଖୋରଧା ସାହେବ ଆଗେ ସମସ୍ତ କହିଲେ
ଶୁଣି ସାହେବ ଯେ ହେଲା ଅତି କୋପଭର
ସେନାପତି କର୍ଣ୍ଣେଲଙ୍କୁ ବସାଇ ପାଶର
କର୍ଣ୍ଣେଲ ହାରବର୍ଟ ସବୁ ଚରିତ ଶୁଣିଲା
ସଇନ ଆଣିବାକୁ କଟକକୁ ଗଲା
କହଇ ମଧୁସୂଦନ ବିପ୍ର ଶତ୍ରେ ଭାଳି
ଏତେବେଳେ ସାହା ହୁଅ ମା ତୁ ହସ୍ତେଶ୍ୱରୀ ।

———

କହୁଛନ୍ତି ପଞ୍ଚାନନ ଶୁଣ ସାକେଶ୍ୱରୀ
ଏଥୁ ଅନ୍ତେ ଯାହା ହେଲା କହୁଛି ବିସ୍ତାରି
ସାମନ୍ତ ମାଧବଚନ୍ଦ୍ର ଯେ ରାଉତରାୟ
ହସ୍ତେଶ୍ୱରୀ ଦେବୀ ପଦେ ଲଗାଇଲେ ଲୟ
ପୂର୍ବରୁ ସେ ପୂଜୁଥାନ୍ତି ସେ ହସ୍ତେଶ୍ୱରୀଙ୍କି
ଦେବୀ ବିନେ କାକୁ ମନେ ନ କରନ୍ତି ଭୀତି ।

ମଙ୍ଗଳବାରେ ସେ ଅସ୍ତ୍ର ନ ଧରନ୍ତ କର
ଥାନ୍ତି ହସ୍ତେଶ୍ୱରୀଙ୍କର ପୂଜାରେ ନିକର
ନାନା ପୂଜା ଉପଚାର ସଙ୍ଗରେ ଘେନିଣ
ସଙ୍ଗତରେ ନେଲେ ଏକ ସୁବିଜ୍ଞ ବ୍ରାହ୍ମଣ
ମାଜଣା କରାଇ ପୁଷ୍ପମାଳ ଗଳେ ଦେଲେ
ସିନ୍ଦୂର ଟିକାକୁ ଦେବୀ ମସ୍ତକେ ଲେପିଲେ,
ଧୂପ ଦୀପ ନୈବେଦ୍ୟ ଦେଇ ଭକ୍ତିଭରେ
ଚଣ୍ଡି ବଗଳା, ଅପରାଜିତା ପାଠକୁ ସେ କଲେ
ପୂଜାପାଇ ମହାଦେବୀ ହୋଇଲେ ପ୍ରସନ୍ନ
ରାଉତରାୟ ଗମିଲେ ଆପଣା ଭବନ
ରାତ୍ରଅର୍ଦ୍ଧେ ମହାଦେବୀ ସ୍ୱପନେ କହିଲେ
କିଛି ଭୟ ନାହିଁ ଯୁଦ୍ଧ କର ତହିଁ ଭଲେ
ତୋର ପାଇଁ କରିବି ମୁଁ ବିଷମ ସମର
ଫିରିଙ୍ଗି ସୈନ୍ୟଙ୍କୁ ନିଶ୍ଚେ କରିବି ସଂହାର ।
ସ୍ୱପ୍ନ ତେଜି ଶ୍ରୀ ସାମନ୍ତ ବେଗରେ ଉଠିଲେ
ସ୍ୱପ୍ନ କଥା ଭାବି ମହା ଆନନ୍ଦିତ ହେଲେ
ପ୍ରଭାତରେ ନିତ୍ୟକର୍ମ ସାରିଣ ବହନ
ପାଶେ ଡାକି ଆଣିଲେ ଦଳାଇ ଗୋବର୍ଦ୍ଧନ
ସମସ୍ତ ଚରିତ ତାଙ୍କୁ ବୁଝାଇ କହିଲେ
ବୈରିଗଞ୍ଜନ ଶୁଣି ଆନନ୍ଦିତ ହେଲେ
ବେନି ଘୋଡ଼ା ଚଢ଼ି ବେନି ବୀର ବାହାରିଲେ
ଗୁପ୍ତେ ସଂଧ୍ୟା ସମୟରେ ପୁରୀରେ ମିଳିଲେ
ଭେଟ ହେଲେ ଯାଇ ଗଜପତିଙ୍କର ପାଶ
ଜୁହାରୁ ଶ୍ରୀ ମୁକୁନ୍ଦଦେବ ବୋଲନ୍ତି ବସ ବସ
ସମସ୍ତ ଚରିତ ତାଙ୍କୁ ବୁଝାଇ କହିଲେ
ଶୁଣି ଗଜପତି ଦୁଃଖ ପ୍ରକାଶ କରିଲେ
ଏହି ବଂଶେ ଜନ୍ମ ମୋର କର୍ମ ହିନମାନ
ଦାଣ୍ଡିର ଭିକାରୀ ପରି କାଟୁଅଛି ଦିନ
ଗଙ୍ଗାଠାରୁ ଗୋଦାବରୀ ଯେଉଁ ବଂଶ କୀର୍ତ୍ତି
ସେ ବଂଶେ ଜନମି ମୁହିଁ ହେଲି ଅଧୋଗତି

ଫିରିଙ୍ଗି ପେସକସି ପାଇ କାହିଁ ଅଛୁଦନ
କି କହିବ କରିବ ନାହିଁ ରାଜପଣ
ଏହା କହି ମହାରାଜା ନୀରବେ ରହିଲେ
ସାମନ୍ତ ମାଧବଚନ୍ଦ୍ର ବଚନ ଭାଷିଲେ ।
ଫିରିଙ୍ଗି ସହିତ ଆମ୍ଭେ କରିବୁଟି ରଣ
ଆସିଅଛୁ ଦୋ'ଙ୍କର ଆଜ୍ଞାକୁ ମାଗିଣ
ନାନା ଅତ୍ୟାଚାରମାନ କଲେଣି ଘଟଣ
ମରିବୁ ମାରିବୁ କରିଅଛୁ ଏହି ପଣ
ବକ୍‌ସି ଜଗବନ୍ଧୁ ଯହୁଁ ହାରିଗଲେ ରଣେ
ଯଭରେ କର ଆଦାୟ କଲେ ଗୋରାମାନେ,
ସେହିଦିନୁ ଦଶ ବର୍ଷ ନ ଦେଲୁ ଯେ କର
ଆମ୍ଭ ଉପରେ ଫିରିଙ୍ଗି ହୋଇ କୋପଭର
ପଚ୍ଚିଶ ଜଣ ସଇନ ଦେଲା ସେ ପଠାଇ
ଯଭରେ କର ଆଦାୟ କରିବାର ପାଇଁ ।
ଯୁଦ୍ଧେ ଦୁଇଜଣ ସୈନ୍ୟ କରିଲୁ ବିନାଶ
ଖୋରଧା ସାହେବ ଶୁଣି ମନେ କରି ରୋଷ ।
କଟକ ସାହେବ ପାଶେ ବାରତା ସେ ଦେଲା,
ସାହେବ କର୍ଣ୍ଣେଲ ହାରବଟକୁ ପେଶିଲା ।
କର୍ଣ୍ଣେଲ ହାରବଟ ଆସି ଖୋରଧା ପ୍ରବେଶ
ସାହେବଠାରୁ ଶୁଣିଲା ସକଳ ସନ୍ଦେଶ
ଖୋରଧା ସାହେବ ମୁଦ ଦେଇ ଦୂତ ହସ୍ତ
ଆମ୍ଭ ଗ୍ରାମକୁ ପେଶିଲା ହୋଇଣ କୁପିତ ।
ପତର ପଢ଼ିଣ ଆମ୍ଭେ ଦେଲୁ ଏ ଉତ୍ତର
କର ନ ଦେବୁ ନିଶ୍ଚୟ କରିବୁ ସମର ।
ପତରରେ ଲେଖାଥିଲା ଯୁଦ୍ଧର ଘୋଷଣ
ବାରଶ ଚଉବିଶ ସାଲ ମିଥୁନ ପଞ୍ଚମୀର ଦିନ
ଏହା ଶୁଣି ମହାରାଜା ହୋଇଲେ ସ୍ତକତ
ବୋଇଲେ ଏଥିରେ କମ୍ପା ବଜାଇଲ ଶତ୍ରୁ
ପାଣିଠାକ ସୈନ୍ୟ ମୋର କରିଣ ନିପାତ
ରାଜ୍ୟ ଛଡ଼ାଇ ଫିରିଙ୍ଗି ନେଲା ରାଜ୍ୟ ଛତ୍ର ।

ଜଳନ୍ତା ଅଗ୍ନିରେ ତୁମ୍ଭେ ପଶୁଛ କମ୍ପାଇ
ରାଉତରାୟ କହନ୍ତ କଷ୍ଟ ଭୟ ନାହିଁ ।
ହସ୍ତେଶ୍ୱରୀ ଦେବୀ ମୋତେ ପ୍ରସନ୍ନ ଅଛନ୍ତ
ଫିରିଙ୍ଗି ସୈନ୍ୟମାନଙ୍କୁ ଦେବେ ସେ ନିପାତ
ଏହା ଶୁଣି ଗଜପତି ସନ୍ତୁଷ୍ଟ ହୋଇଲେ
ସେନାପତି ଶାଢ଼ୀ ତାଙ୍କ ମସ୍ତକେ ବାନ୍ଧିଲେ ।
ଖୋରଧା ସାତ କରଣେ ଥିଲେ ଯେ ନାୟକ
ଏବେ ସେନାପତି ପଦେ ରଖି ତୁହ୍ନି ଠେକ ।
ଗୁପତ ସନ୍ଦେଶ କେଭେଁ ପ୍ରକଟ ନ କର
ରାଜଗୁରୁ ଗୁପ୍ତେ ଯା'ନ୍ତୁ ତୁମ୍ଭ ସଙ୍ଗତର
ଦଳାଇ ଦଳବେହେରା ପାଇକଙ୍କୁ ନେଇ
କରଣମାନଙ୍କୁ ତାଙ୍କ ପାଶରେ ବସାଇ
ରାଜାଜ୍ଞାରେ ସେନାପତି ଏ ମାଧବ ବୀର
ଫିରିଙ୍ଗି ସହିତ ନିଶ୍ଚେ କରିବେ ସମର ।
ଯାଅ ଯାଅ କହ ତୁମ୍ଭେ ଏ ଗୁପ୍ତ ବାରତା
ନିର୍ଭୟ ହୋଇଣ ସର୍ବେ ଯୁଦ୍ଧେ ହୋନ୍ତୁ ରତା
ରାଜାଜ୍ଞାରେ ତିନଜଣ ଜୁହାର କରିଣ
ବାହାରି ବାଜି ଉପରେ ଚଢ଼ିଲେ ତତ୍‌କ୍ଷଣ ।
ସଂଧ୍ୟା ସମୟେ ତାପଙ୍ଗ ଦୁର୍ଗରେ ପ୍ରବେଶ
ଭୋଜନ ଶୟନ ନିତ୍ୟକର୍ମ କଲେ ଶେଷ
ସାତ ଦଳବେହେରା ଯେ ସ୍ୱଳଶ ଦଳାଇ
ପାଞ୍ଚ କରଣ ପାଖକୁ ଦୂତ ଗଲେ ରହି
ବୃଷ ପଚିଶି ଦନକୁ ଉକସ କରିଲେ
ପତର ନେଇଣ ଦୂତ ବେଗେ ଚଳିଗଲେ ।
ପତର ପାଇଣ ସର୍ବେ ହୋଇଏକମେଳ
ଗଡ଼ ତାପଙ୍ଗ ମିଳିଲେ ହୋଇ କୁତୁହଳ
ରାଜଗୁରୁ ସମସ୍ତ ବିଷୟ କହିଲେ
ଯୁଦ୍ଧପାଇଁ କି ସର୍ବେ ସନମତ କଲେ
ଯେତେ ସୈନ୍ୟ ଆଣିବାକୁ କରିଲେ ଗମନ
ବିପ୍ର ମଧ୍ୟ କହେ ସର୍ବେ ହୋଇ କୋପମନ ।

ଏଥୁ ଅନ୍ତେ ଆନ ରସ ଶୁଣ ଭଗବନ୍ତି
ଦଳବେହେରାମାନେ ଯେ ସୈନ୍ୟ ପଠାବନ୍ତ
ମଞ୍ଚପଡ଼ା ନାରାୟଣ ଗଡ଼ରୁ ଦଳାଇ
ପାଇକ ସୈନ୍ୟମାନଙ୍କୁ ସଙ୍ଗତରେ ନେଇ
ରାମଚଣ୍ଡୀ ଗଡ଼ୁ ଯେ ଆସିଲେ ସୈନ୍ୟଦଳ
ଦଳାଇ ଦଳପତି ଯେ ଅଛନ୍ତି ସଙ୍ଗର ।
ସଡ଼ାଇ ଗଡ଼ରୁ ପାଇକ ହୋଇଲେ ବାହାର
ନାନାଦ ୱୀର ବାଜାକୁ ବଜାଇ ଆଗର
ପ୍ରଧାନ ପାଇକମାନେ ଛଣମାଗଡ଼ର
ଦଳାଇମାନେ ଅଛନ୍ତି ସଙ୍ଗତେ ତାଙ୍କର
ରଥିପୁର ଗଡ଼ରେ ମହା ଯୋଧା ଥିଲେ
ସୈନ୍ୟ ସେନାଧର ସଙ୍ଗେ ବାହାର ହୋଇଲେ ।
ପଶ୍ଚିମ କାଇପଦର ଗଡ଼ରୁ ପାଇକ
ଯୁଦ୍ଧକୁ ବାହାର ହେଲେ ହୋଇଣ ଉତ୍ସୁକ ।
ଦଧିମାଛଗାଡ଼ିଆ କରଣ ମଉସମ
ନିଜ ନାମ ତାଙ୍କର ଯେ ଶ୍ରୀ ମଧୁସୂଦନ ।
ବଙ୍ଗିଡା, କଞ୍ଚଲୋ, ଝିଙ୍କିଝାରର କରଣ,
ଧନୁର୍ଜ୍ଜୟ ଶ୍ରୀଚନ୍ଦନ ତାଙ୍କ ନିଜ ନାମ ।
ଛାପଙ୍ଗ ବାର ପଲ୍ଲୀରୁ ହୋଇଲେ ଡାକରା,
ପାଇକ ପ୍ରଧାନ ଆସିଗଲେ ମିଳ ଭରା ।
ଗଡ଼ ଛାପଙ୍ଗର ହସ୍ତେଶ୍ୱରଙ୍କ ପାଶର,
ମିଥୁନ ତନ ଦନ ସଙ୍ଗେ ମିଳଲେ ସତ୍ୱର ।
ସାମନ୍ତ ମାଧବଚନ୍ଦ୍ର ସୈନ୍ୟ ପାଇଁ ଘର,
ଆଗୁ ରଚିଥିଲେ ତହିଁ ରହିଲେ ନିକର ।
ଅଣ୍ଡା କୋଠକରଣ ସୈନ୍ୟଙ୍କ ଚରଣ୍ଡ ବୁଝିଲେ,
ସଙ୍ଗ ପରେ ମୌସମ ଅଗ୍ରଣୀ ଯେ ଥିଲେ ।
କଞ୍ଚଲେ କରଣ ହେଲେ ଭଣ୍ଡାର ଅଧିକାରୀ,
ସୈନ୍ୟ ସଜ୍ଜା କରିବା କରଣ ଝିଙ୍କିଝାରୀ ।
ଯେଝା କାମରେ ଯାହାକୁ କଲେ ଯେ ନିଯୁକ୍ତ,
ସୈନ୍ୟ ସାମନ୍ତ ଚରଣ୍ଡ ପାଇ ହେଲେ ତୃପ୍ତ ।

ଯୁଦ୍ଧସ୍ଥଳୀ ଗଡ଼ ତାପଙ୍ଗ ପୂରୁବ ଦିଗରେ,
କାଣ୍ଡଗୋଦା ପଦାଠାରେ ସର୍ବେ କଲେ ସ୍ଥିର ।
ଉତ୍ତରରେ ନୀଳକଣ୍ଠ ପୂର୍ବେ ସାକେଶ୍ୱର,
ପୂର୍ବ ଦକ୍ଷିଣ କୋଣେ ନୀଳକଣ୍ଠଙ୍କ ମନ୍ଦିର ।
ପଶ୍ଚିମେ ଶ୍ରୀ ହସ୍ତେଶ୍ୱରୀ ଦେବୀଙ୍କ ଆସ୍ଥାନ,
ଯୁଦ୍ଧସ୍ଥଳୀ ଏହି ହେଲା ଶୁଣ ବୁଧ ଜନ ।
ମିଥୁନ ଗୃହରଦନ ସୈନ୍ୟ ସଜାଇଲେ,
ରାଉତରାୟ ହସ୍ତେଶ୍ୱରୀ ପୂଜା ପାଠ କଲେ ।
ସବୁ ପ୍ରହରକ ଥାଉଁ ତାପଙ୍ଗର ସୈନ୍ୟ,
ବୀରବେଶ ହୋଇ କଲେ ଯୁଦ୍ଧକୁ ତ ମନ ।
ତାହାଙ୍କର ନାମ କିଛି କରୁଛି ବର୍ଣ୍ଣନ,
ବୁଧ ଜନମାନେ ଶୁଣ ହୋଇ ଏକମନ ।
ଶ୍ରୀ ସାମନ୍ତ ମାଧବଚନ୍ଦ୍ର ରାଉତରାୟ,
ବୀରବେଶ ସାଜ ସେହି ପିନ୍ଧିଲେ ଯେ ଭାୟା ।
ମସ୍ତକରେ ପଗଡ଼ି କର୍ଣ୍ଣରେ ବୀରବଳୀ,
କରରେ କଙ୍କଣ ବକ୍ଷ ସ୍ଥଳେ ରତ୍ନମାଳୀ ।
କଣ୍ଠେ ସୁନା ପଇତା ଅଙ୍ଗୁଷ୍ଠେ ସୁନାମୁଦି,
ପସ୍ତରେ ଅନର୍ଗଳ ଗୋଡ଼ରେ ନେଲେ ସାଜ ।
ଶ୍ରୀଅଙ୍ଗେ ଜରିଜାମା ଉତ୍ତରଣ ସାଲଯୋଡ଼ି,
ନଗବନ୍ଧ ଛତ୍ରପକ୍ଷେ ମାଲକାଛା ଭିଡ଼ି ।
ନୃସିଂହ କବଚ ନେଇ ବାନ୍ଧିଲେ ବାହୁରେ,
ତାଙ୍କ ଭାର୍ଯ୍ୟା ଇନ୍ଦୁରେଖା ହରଷ ଅନ୍ତରେ ।
ନାନା ପୁଷ୍ପମାଳ ନେଇ ଗଳାରେ ଖଞ୍ଜିଲେ,
ବିଜୟ ସିନ୍ଦୂରଟିକା ମସ୍ତକରେ ଦେଲେ ।
ଶୁଭ ଅନୁକୂଳେ ଦାସୀ ପରିବାର ଯେନ,
ହର୍ଷେ ହୁଳହୁଳି ଦେଲେ ଅହିଅ କାମିନୀ ।
ବୋଲନ୍ତି ଅସୁର ଫିରିଙ୍ଗିକୁ ବେଗେ ମାର,
ବୀର ମର୍ଯ୍ୟାଦା ରଖି ଯଶ ଉଡ଼ାଅ ମହୀର ।
ତାଙ୍କ ମାତା ଅନ୍ନପୂର୍ଣ୍ଣା ହୋଇ ହୃଷ୍ଟଚିତ୍ତ,
କ୍ଷତ୍ରିୟ ମାନ ତୁ ରଖ କରି ଶତ୍ରୁହତ ।

ଏହି କାଳେ ଶ୍ରୀ ସାମନ୍ତ ହୋଇଲେ ବାହାର,
ନାନା ବୀର ବାଜା ବାଜେ ଚୌପାଢୀର ଦ୍ୱାର ।
ହସ୍ତୀର ଉପରେ ଯାଇ ବେଗେ ସେ ବସିଲେ,
ଦଳାଇ ପାଇକମାନେ ବାହାର ହୋଇଲେ ।
ଦଳାଇ ଗୋବର୍ଦ୍ଧନ ବଇରି ଗଞ୍ଜନ,
ବୀରବେଶ ସାଜି ବାହାରିଲେ ତତ୍‌କ୍ଷଣ ।
ହସ୍ତେ ଖଣ୍ଡା ଧରି ହେଲେ ମହାପରଚଣ୍ଡ,
ତାଙ୍କ ସଙ୍ଗେ ଛନ୍ତି ତାଙ୍କ ଭାଇ ନବଭେଣ୍ଡ ।
ଦଳାଇ ଭଗିରଥି ଯେ ବାହାର ହୋଇଲେ,
ନାନା ବୀର ବେଶ ସାଜି ହରଷ ଅନ୍ତରେ ।
ଅଶ୍ୱପୃଷ୍ଠେ ବେଗେ ଆସି କଲେ ଆରୋହଣ,
ରୂପ ଦିଶିଲା ତାଙ୍କର କାର୍ତ୍ତିକ ସମାନ ।
ପଞ୍ଚ ସେନାମା ପାଟଖଣ୍ଡା ଧରି ବେଗେ,
ବୀର ବେଶ ଆଉଁଟିଣ ବାହାରିଲେ ରଣେ ।
ପ୍ରତାପସିଂହ ପ୍ରତାପେ ହୋଇଲେ ବାହାର,
ବେନକରେ ଶୋଭା ପାଉ ଅଛି ଧନୁସର ।
ରଣସିଂହ ପାଇକଙ୍କ ମଧ୍ୟେ ଥିଲା ଶ୍ରେଷ୍ଠ,
ବୀର ବେଶ ସାଜି ବେଗେ କାମୁଡ଼ିଣ ଓଷ୍ଠ ।
ପାଇକମାନଙ୍କୁ ବେଗେ ମଣାଇଁ ଆଣିଲେ,
ସମସ୍ତେ ମେଳ ହୋଇଣ ଏକଠାବ ହେଲେ ।
ପୂରୁବ ମୁଖ ହୋଇଣ ଚଳିଲେ ସତ୍ୱର,
ପ୍ରବେଶିଲେ ହସ୍ତେଶ୍ୱରୀ ଦେବୀ ନିକଟର ।
ପଶ୍ଚିମ ମୁରଣ୍ଡ ହୋଇ ସକଳେ ଚଳିଲେ;
ଅସ୍ତ୍ରାଗାରଠାରେ ଯାଇଁ ପ୍ରବେଶ ହୋଇଲେ ।
କହଇ ମଧୁସୂଦନ ବପ୍ରଚଣ୍ଡେ ଭଲ,
ବୀରବାଜା ଶବଦରେ ଗଗନ ଉଛୁଳି ।

---

ଏଥୁଅନ୍ତେ କଉତୁକ କୁଣ ଭଗବନ୍ତ,
ଅସ୍ତ୍ରାଗାରଠାରେ ସୈନ୍ୟମାନେ ଯେ ମିଳନ୍ତି ।

ସମନ୍ତର ଗୁମାନସିଂହ ଏ ବେନ ଦଳାଇ
ପଞ୍ଚାସ ଜଣ ପାଇକ ସଙ୍ଗତରେ ଥାଇ ।
ପାଞ୍ଚଗୋଟି ହସ୍ତୀ ତହିଁ ଥାଆନ୍ତି ସତତ
ଅସ୍ତ୍ରାଗାର ଜଗିରହି ଥାଆନ୍ତି ନିରତ ।
ଗଡ଼ର ପଶ୍ଚିମ ଦ୍ୱାର ଘୋର ଜଙ୍ଗଲରେ
ନ ଜାଣନ୍ତି ଅନ୍ୟ କେହି ଥିବା ଅସ୍ତ୍ରାଗାରେ ।
ତୋପ ବନ୍ଧୁକ କମାଣ ସଙ୍ଗିଆ ତୋମର
ଛେଲଗଦା, ଗରୁଜତନା ହଜାରୁ ହଜାର ।
ସିଶା ଗନ୍ଧକ ବାରୁଦ ଟଣି ଯେ ଅପାର
ଢାଲ ଖଣ୍ଡା ତରୁଆଲ କେ କରେ ସୁମାର ।
ଦଶ ସହସ୍ର ସୈନ୍ୟପାଇଁ ଅସ୍ତ୍ର ତହିଁ ଅଛି
ସେଥି ମଧ୍ୟୁ ସବୁ ସୈନ୍ୟ ନେଲେ ବାଛି ବାଛି ।
ଯେଉଁ ସୈନ୍ୟଙ୍କର ମନ ଯେ ଅସ୍ତ୍ରେ ବଳିଲା
ଅସ୍ତ୍ରାଗାର ଗନ୍ତାଯୂତ ତାଙ୍କୁ ବାଛି ଦେଲା ।
ସୈନ୍ୟ ସଜାଇଲେ ଯେ ଦଳାଇ ଗୋବର୍ଦ୍ଧନ
ତାଙ୍କ ସଙ୍ଗେ ମିଶି ଧନୁର୍ଦ୍ଧର ଶ୍ରୀଚନ୍ଦନ ।
ଆଗରେ ବୀର ବାଜା ଯେ ଅନେକ ବଜାଇ
ତିନିଶ ପାଇକ ତାଙ୍କ ପଛରେ ସଜାଇ ।
ଖଣ୍ଡାଧରି ଖଣ୍ଡାଯୂତ ତାଙ୍କ ପଛେ ରହି
ବନ୍ଧୁକଧାରୀ ଦୁଇଶତ ନିକଟରେ ଥାଇ ।
ଅଶ୍ୱାରୋହୀ ଶତ ଶତ ତାଙ୍କ ପଛେ ଗଲେ
ବନ୍ଧୁକ, ଜଜାଲ, ଛେଲ ଧରିଛନ୍ତି କରେ ।
ତିନିହସ୍ତୀ ପରେ ଛଅ ତୋପ ଯେ ଲଦିଲେ
ବୀର ଡାକ ଦେଇ ସର୍ବେ ବାହାର ହୋଇଲେ ।
ଫିରିଙ୍ଗିକୁ ମାର ବୋଲି ପାଇକ ବାହିନୀ
ସର୍ବେ ଉଚ୍ଚସ୍ୱରେ ଡାକେ କମ୍ପାଇ ମେଦିନୀ ।
ଗଡ଼ ଭିତରେ ଆସିଣ ହେଲେ ପରବେଶ
ମଙ୍ଗଳା ଅଷ୍ଟକ ପଢ଼ୁଛନ୍ତି ବ୍ରହ୍ମଶିଷ୍ୟ ।
ଅନ୍ୟ ନାରୀମାନେ ଯେ ହୋଇ ଏକମେଳ
ଆନନ୍ଦ ମନରେ ଦେଉଛନ୍ତି ହୁଳହୁଳି ।

ଦୁବ ତଣ୍ଡୁଳ ଯେ ପୁଷ୍ପ ବରକୋଳ ପତ୍ର
ବୀରମାନଙ୍କୁ ବନ୍ଦାନ୍ତି ହୋଇ ହର୍ଷ ଚିତ୍ତ ।
ଦ୍ୱାରେ ଦ୍ୱାରେ ଥାପିଛନ୍ତି ପୂର୍ଣ୍ଣକୁମ୍ଭମାନ
ଉପରରୁ ତୋରଣ ଯେ ଆମ୍ରପତ୍ରମାନ ।
ଭାଟମାନେ ନାଟକର ଗାଉଛନ୍ତି ଗୀତ
ବୋଲନ୍ତି ଜୟ ମାଧବ ମହେଶ୍ୱରୀ ମାତ ।
ପ୍ରବେଶି ଦକ୍ଷିଣ ଚଣ୍ଡି ଦେବୀଙ୍କ ଆସ୍ଥାନ
ଜୁହାର କରିଲେ ଯାଇ ତାଙ୍କୁ ସର୍ବଜନ ।
ମହାକୋଳାହଳ ସଙ୍ଗେ କରି ପଟୁଆର
ପ୍ରବେଶ ହୋଇଲେ ହସ୍ତେଶ୍ୱରୀ ନିକଟର ।
ଗଜ ଅଶ୍ୱରୁ ଉତୁରି ସର୍ବ ସୈନ୍ୟଗଣ
ହସ୍ତେଶ୍ୱରୀଙ୍କର ପଦେ କରିଲେ ପ୍ରଣାମ ।
ତହୁଁ ଶ୍ରୀ ମାଧବଚନ୍ଦ୍ର ଅତି ଆନନ୍ଦରେ
ପୁଷ୍ପମାଳ ଦେଲେ ଯାଇ ଧନୁର୍ଜ୍ଜୟ ଗଳେ ।
ବୋଇଲେ ଆଜିର ରଣେ ତୁମ୍ଭେ ସେନାପତି
ପଣରେ ବରଣ କରି ଯାଅ ହେ ଝଟତି ।
ଗୁରୁଜନଙ୍କର ପଦେ କରି ନମସ୍କାର
ତ୍ୱରିତେ ବସିଲେ ଯାଇ ଘୋଟକ ଉପର ।
ଅନୁକୂଳ ତୋପ ଏକ ଫୁଟାଇଣ ଦେଲେ
ଏହା ଶୁଣି ଗୋରାସୈନ୍ୟ ଚମକି ପଡ଼ିଲେ ।
ଧନୁର୍ଜ୍ଜୟ ଆଦେଶରେ ଦଳପତିଗଣ
ବୀରଡାକ ଦେଇ ସର୍ବେ ଚଳାଇଲେ ସୈନ୍ୟ ।
ଆଗରେ ବୀର ବାଜାରେ ପୁରେ ଦଶଦିଶ
କାଣ୍ଡିଗୋଦାଠାରେ ଯାଇ ହେଲେ ପରବେଶ ।
ମିଥୁନ ପାଞ୍ଚଦିନ ଯେ ଯୁଦ୍ଧ ଅନୁକୂଳ
କାଞ୍ଚି ଆଗଡ଼ ଆଗରୁ ଥିଲେ ଗୋରାସୈନ୍ୟ ।
ତେଣେ ଫିରିଙ୍ଗି ସୈନ୍ୟ ଯେ ବାଦ୍ୟନାଦ ଶୁଣି
ସୈନ୍ୟମାନଙ୍କୁ ଯେ ବେଗେ କଲେ ଯେ ସାଜେଣି ।
ନାନା ବୀର ବେଶ ହୋଇ ବାହାରିଲେ ସୈନ୍ୟ
ବାଜଣା ଶବଦେ କମ୍ପୁଅଛି ତ୍ରିଭୁବନ ।

ସାତଶ ବନ୍ଧୁକଧାରୀ ସୈନ୍ୟ ଆଗଭର
ପ୍ରବେଶିଲେ ଭଲ୍ଲଖିଆ ଝାଙ୍ଗିରେ ସତ୍ୱର ।
ଦୁଇଶହ ଅଶ୍ୱାରୋହୀ ତାହାଙ୍କ ପଛର
ସର୍ବେ ଅସ୍ତ୍ରେ ସଜ୍ଜା ହୋଇଥିଲେଟି ନିକର ।
ଅନୁକୂଳ ତୋପ ସେସ୍ଥଠାରେ ଫୁଟାଇଲେ
କୋଳାହଳ ଶବଦରେ ବାହାର ହୋଇଲେ ।
କର୍ଣ୍ଣେଲ ହାରବର୍ଟ ସେନାପତି ଆଗଭର
ମାର ମାର ଶବଦ କରନ୍ତି ଉଚ୍ଚାର ।
କୋଳାହଳ ଶବଦରେ ସୈନ୍ୟ ଯେ ଧାଇଁଲେ
ଯୁଦ୍ଧସ୍ଥଳୀ କାଣ୍ଡଗୋଦା ପଦାରେ ମିଳିଲେ ।
ଉଭୟ ଦଳ ସେଠାରେ ହୋଇଲେ ଯେ ଭେଟ
ଅସ୍ତ୍ରାଘାତେ ବୀରଡାକ ପଡ଼ିଲା ଚମକ ।
ଅଗ୍ରସେନାପତି ଛନ୍ତି ଧନୁର୍ଜୟ ବୀର
ଉଚ୍ଚେ ଡାକ ଦିଏ ଅସୁରଙ୍କୁ ମାର ମାର ।
ଏହା ଶୁଣି ସୈନ୍ୟବଳ ହୋଇ କୋପାନଳ
ବନ୍ଧୁକ ଜଞ୍ଜାଲଧରି ହେଲେ ଆଗୁସାର ।
ଦିନ ସାତ ଘଡ଼ିଠାରେ ଯୁଦ୍ଧ ଯେ ହୋଇଲା
ଦୁଇଦଳଙ୍କ ସମରେ ଚଉଦ ଘଡ଼ି ହେଲା ।
ମହାଘୋର ସମର ଯେ ହେଲା ଗୁରୁତର
ଫିରିଙ୍ଗିର ସୈନ୍ୟ ମଲେ ଏକଶପନ୍ଦର ।
ପାଇକଙ୍କ ମଧ୍ୟୁ ସୈନ୍ୟ ସାତଗୋଟି ହତ
ସତରଜଣ ଯେ ହୋଇଅଛନ୍ତି ଆହତ ।
ଯୁଦ୍ଧ ବନ୍ଦକରି ଯେଝା ଠଣା ପାଶେ ଗଲେ
ଆହତ ସୈନ୍ୟମାନଙ୍କୁ ଔଷଧ ଦେଲେ ।
ଗଡ଼ର ବୈଦ୍ୟ ପାଟାଳ ସିଂହ ଯେ ଅଟନ୍ତି
ଧନ୍ୱନ୍ତରୀ ସମାନ ସେ ବିଦ୍ୟାଙ୍କୁ ଜାଣନ୍ତି ।
ରାମାୟଣ ରଣେ ଯେହ୍ନେ ଥିଲେ ଯେ ସୁଷେଣ
ତାଙ୍କଠାରୁ ବଳକରି ଯାହାଙ୍କର ଗୁଣ ।
ନିତ୍ୟକର୍ମ ସାରି ସକଳ ସଇନ
ଯୁଦ୍ଧ ଖବର ବୁଝନ୍ତି କରିଣ ସଇନ

ପରଦିନ ପ୍ରଭାତରେ ସକଳ ସଇନ
ସାହାନ ଭୋଜନ ସାରି ଯୁଦ୍ଧକୁ ଗମନ ।
କର୍ଣ୍ଣେଲ ହାରବର୍ଟ ହୋଇ ଅତି କୋପଭର
ବୋଇଲା ପାଇକ ସୈନ୍ୟ କରରେ ସମର ।
ଏଣେ ଧନୁର୍ଜୟ ଯେ ଦଳାଇ ଗୋବର୍ଦ୍ଧନ
ବେନି ବାଘର ଚଢ଼ିଣ ହୋଇ ତେଜଆନ ।
ମହାକୋପଭରେ ସେ ଫଉଜଙ୍କୁ ଗୁଳି
ମାରମାର ଶବଦରେ କଂପେ ଯୁଦ୍ଧସ୍ଥଳୀ ।
ବେଳୁବେଳ ସମର ଯେ ହେଲା ଗୁରୁଠାଣ
ପାଇକଦଳ ଗୋରାଙ୍କୁ କଲେ ରଣଭଣ ।
ସୂର୍ଯ୍ୟ ଅସ୍ତ ପରିଯନ୍ତ ହେଲା ଘୋର ରଣ
ଉଭୟ ଦଳୁ ମରିଲେ ଅଶି ଯେ ସଇନ ।
ତୃତୀୟ ଦଳ ଯୁଦ୍ଧକୁ ହେଲେ ଆଗଭର
ଯେତା ସୈନ୍ୟ ସଙ୍ଗେ ଘେନି ହୋଇ କୋପଭର
ଉଭୟ ଫଉଜ ଯାଇ ହେଲେ ଏକମେଳ
ଡାକହାକ ହୋଇ ଗର୍ଜେ କରିଲେ ସମର ।
ବୀର ଧନୁର୍ଜୟ ଯେ ଦଳାଇ ଗୋବର୍ଦ୍ଧନ
ମହାକୋପେ ମାରୁଛନ୍ତି ଗୋରାଙ୍କ ସଇନ ।
କର୍ଣ୍ଣେଲ ହାର୍ବର୍ଟ ଏହା ଦେଖି କୋପଭର
ବନ୍ଧୁକ ଟିପିଲା ଧନୁର୍ଜୟର ଉପର ।
ମସ୍ତକେ ବାଜିଣ ଗୁଳି ପ୍ରାଣ ହରାଇଲେ
ବାଘର ଉପରୁ ବୀର ଢଳିଣ ପଡ଼ିଲେ ।
ହାହାକାର ପଡ଼ିଗଲା ପାଇକ ଦଳର
ଜୟ ରଡ଼ି ଡାକ ଦେଲେ ଫିରିଙ୍ଗିର ବଳ ।
ଧନୁର୍ଜୟ ମଲା ଶବ୍ଦ ମାଧବ ଶୁଣିଲେ
ଅଶ୍ୱଚଢ଼ି ଅସ୍ତ୍ରଧରି କ୍ରୋଧରେ ଧାଇଁଲେ ।
ଧନୁର୍ଜୟ ଶବ ଦେଖି ହୋଇଲେ ଅସ୍ଥିର
ସେନାପତି ଭାବେ ରହି କରିଲେ ସମର ।
ସେ ଦିନର ଘୋର ଯୁଦ୍ଧ ଦେଖିଣ କର୍ଣ୍ଣେଲ
ପଛଦୁଆ ହୋଇଗଲା ତା ଠଣା ପାଶର

ଫିରିଙ୍ଗି ସୈନ୍ୟରୁ ବହୁ ସୈନ୍ୟ ହେଲେ ମୃତ
ତିନଦିନ ଯୁଦ୍ଧ ଏଥୁଁ ହେଲା ସମାପତ ।
ଦୁଇଦଳ ସୈନ୍ୟ କଲେ ଭୋଜନ ଶୟନ
ସେଇ ରାତ୍ରେ ପଳାଏ କରଣ ମଉସମ ।
କରଣ ମଉସମ ନକୁଛା ବୁଧି କଲା
ଖୋରଧା ସାହେବ ପାଶେ ପ୍ରବେଶ ହୋଇଲା ।
ନାନାଦି ଗୁପ୍ତ କଥା ସେ କରିଲା ଗୋଚର
ସାହେବର ହୋଇଲା ସେ ବିଶ୍ୱାସୀ ପାତର ।
ସାହେବ କହେ ନିସ୍କର ବୃତ୍ତି ଆମ୍ଭେ ଦେବୁ
ପ୍ରଧାନ ଗୃହକର ଦେଇ ତୁମ୍ଭଙ୍କୁ ରଖିବୁ ।
ଶୁଣି ମଧୁସୂଦନ ଯେ ବହୁଣ ତୋଷଭାବ
ଗୁପତ କଥା ବ୍ୟକତ କରିଲା ସେ ସର୍ବ ।
ସାମନ୍ତ ମାଧବଚନ୍ଦ୍ର ହସ୍ତେଶ୍ୱରୀ ଭକ୍ତ
ଦେବୀର ସାହେ କାହାଙ୍କୁ ନକରେ ସେ ଭିତ ।
କାଲି ମଙ୍ଗଳବାରେ ସେ ଅସ୍ତ୍ର ନ ଧରିବ
ହସ୍ତେଶ୍ୱରୀ ପୂଜା ସେ ନିରବେ କରିବ ।
ଆଜରାତ୍ରୁ ଉଠି ଯେବେ ସମର କରିବ
ନିଶ୍ଚୟେ ଆପଣଙ୍କର ପରା ଜୟ ହେବ ।
ଏହା ଶୁଣି ସାହେବ ଯେ କର୍ଣ୍ଣେଲ ପାଖକୁ
ଦୂତ ବରଗିଲା କହି ସମସ୍ତ ହାଲକୁ ।
ଏଣେ ଚତୁର୍ଥ ଦିନର ବିଷମ ସମର
ମିଥୁନ ଆଠଦିନ ଯେ ଅଟେ ସୋମବାର ।
ସେନାପତି ମାଧବ ଯେ ହୋଇ କୋପଭର
ଗୋରା ସଇନମାନଙ୍କୁ କରନ୍ତି ସଂହାର ।
କର୍ଣ୍ଣେଲ ହାର୍କଟ ସଙ୍ଗେ କଲେ ଘୋରରଣ
ପଛଦୁଆ ଦେଲେ ତହୁଁ ଫିରିଙ୍ଗି ସଇନ ।
ଗୋରାମାନେ ରାଗେ ତହୁଁ ବନ୍ଧୁକ ଟିପିଲେ
ପଚିଶ ଜଣ ସୈନ୍ୟଙ୍କୁ ହତ ସେ କରିଲେ ।
ସାମନ୍ତ ଦଳବେହେରାଙ୍କୁ କହେ ଗୁଇନ୍ଦାରେ
କହିଲା ଆସିଣ ସବୁ ଖୋରଧା ଖବର ।

ଟଉସମ ଖୋରଧା ସାହେବ ସାଙ୍ଗେ ବସି
କଥାଭାଷା ହେଉଥିଲା ଦେଖିଅଛୁ ଆସି ।
ବିପ୍ର ମଧୁସୂଦନ ଯେ କହେ ଯୋଡ଼ି କର
ଦୟାକର ଭବଗ୍ରାହି କରୁଣାସାଗର ।

---

ଏଥୁ ଅନ୍ତେ କଉତୁକ ଶୁଣ ଗୋ ଭବାନୀ
ପଞ୍ଚମ ଦିନର ଯୁଦ୍ଧ କହୁଛି ବଖାଣି ।
ତେବେଣେ କର୍ଣ୍ଣେଲ ପାଶରେ ସାହେବର ଚର
ବୁଝାଇ କହିଲା ଆସି ସମସ୍ତ ଖବର ।
ଶୁଣିକରି କର୍ଣ୍ଣେଲ ଯେ ଆନନ୍ଦିତ ହେଲା
ଆଜି ମାଧବ ଯୁଦ୍ଧ ନ କରିବ ସେ ଜାଣିଲା ।
ନିତ୍ୟକର୍ମ ସାରି ସର୍ବେ ହୋଇ ବୀର ବେଶ
ଯୁଦ୍ଧକୁ ବାହାରୁ ସୂର୍ଯ୍ୟ ହୋଇଲେ ପ୍ରକାଶ ।
କଳକଳା ଧ୍ୱନି କରି ଗାଲଭୁଷା ବାଇ
ପ୍ରବେଶ ହୋଇଲେ କାଣ୍ଡିଗୋଦାଠାରେ ଯାଇଁ ।
ଏଣେ ପାଇକଙ୍କ ସୈନ୍ୟ ଆଗୁ ଯାଇଥିଲେ
ଉଭୟ ଦଳ ସେଠାରେ ଭେଟାଭେଟି ହେଲେ ।
ଉଭୟ ଦଳଙ୍କ ତହିଁ ହୋଇଲା ସମର
ଯୁଦ୍ଧ କଲେ ସୂର୍ଯ୍ୟ ଅସ୍ତ ହୋଇଲେ ସତ୍ୱର ।
ମାଧବଙ୍କୁ ଯୁଦ୍ଧରେ ନ ଦେଖି ଅସୁର
ଆଜି ନିଶ୍ଚେ ଯୁଦ୍ଧଜୟ ହୋଇବ ଆମ୍ଭର ।
ଏହା ଭାବି ରଙ୍ଗେ ପୁଣି କରନ୍ତି ସମର
ହସ୍ତେଶ୍ୱରୀ ଦେବୀ ତାହା ଜାଣିଣ ଅନ୍ତର ।
ମହାକୋପଭରେ ଦେବୀ ହୋଇ ବୀରବେଶ
ମାୟାମାଧବ ରୂପରେ ଯୁଦ୍ଧରେ ପ୍ରବେଶ ।
ବାଟର ଧୂଆଁଇ ବେଗେ ରଣରେ ପଶିଲେ
ତାଙ୍କ ବୀର ମୂର୍ତ୍ତି ଦେଖି ଆଶ୍ଚର୍ଯ୍ୟ ହୋଇଲେ ।
ମାୟାରେ ଦେବୀ ମାରନ୍ତି ଅସଂଖ୍ୟ ସଇନ
ଏହା ଦେଖି କର୍ଣ୍ଣେଲ ଯେ ହୋଇ କୋପମନ ।

ମାୟା ମାଧବଙ୍କୁ ଶେଷେ ବନ୍ଧୁକ ଚିପିଲା
ବାମ ପାଖେ ବାଜ ଗୁଳ ରକତ ବୋହିଲା ।
ଏହା ଦେଖି ଗୋରା ସୈନ୍ୟ ଜୟ ଜୟ କରି
ପାଇକ ସୈନ୍ୟରେ ପଡ଼ିଗଲା ହାଲହୁଲି ।
ସେହିଦିନ ରଣେ ଏକଶ' ଷାଠିଏ ଅସୁର
ମଲେ ତଳେ ହେଁ ଶୋଚନା ନାହିଁ ତାହାଙ୍କର ।
ଗୋରା ସୈନ୍ୟ ପତାକା ଉଡ଼ାଇଣ
ମାଧବ ମଲା ବୋଲି ସେ ହୋଇ ହର୍ଷମନ ।
ଯୁଦ୍ଧ ବନ୍ଦକରି ସର୍ବେ ଯେଝା ଠଣା ପାଶ
କର୍ଣ୍ଣେଲ ପେଶିଲା ଚର ସାହେବର ପାଶ ।
ବୋଇଲା ମାଧବଠାରେ ଗୁଳ ଯେ ବାଜିଛି
ମଲାକି ନମଲା କିଛି ଜଣା ନ ଯାଉଛି ।
ଏହା ଶୁଣି ସାହେବ ହୋଇଲା ତୋଷମନ
ପାଶକୁ ଡକାଇ ଆଣେ ବେଗେ ମଉସମ ।
ସମସ୍ତ ଯୁଦ୍ଧ ଚରିତ ବୁଝାଇ କହିଲା
ଶୁଣିକରି ମଉସମ ବିଶ୍ୱାସ ନ ଗଲା ।
ବୋଇଲା ମାଧବ କେବେ ନ କରିଛି ରଣ
ଦେବୀର ମାୟା ଏସବୁ ଘଟଣାଟି ଜାଣ ।
ଏହା କହି ମଉସମ ହୋଇଲା ମଉନ
ବୁଝିବ ସେ ଆଜ ନିଶ୍ଚେ କରିବଟି ରଣ ।
ଏଥିଅନ୍ତେ ଯୁଦ୍ଧବାର୍ତ୍ତା ଶୁଣ ହେ ବିଦୁଷ
ପାଇକ ମିଳିଲେ ଯାଇ ହସ୍ତେଶ୍ୱରୀ ପାଶ ।
ପୂର୍ବେ ସିନ୍ଦୂର ଫାଟି ଉଦେ ଦିନକର
ସୈନ୍ୟ ଦେଖିଲେ ମାଧବ ଦେବୀଙ୍କ ପାଶର ।
ଶ୍ରୀସାମନ୍ତ ପୂଜାସାରି ହୋଇଲେ ବାହାର
ସମସ୍ତ ଚରିତ ସୈନ୍ୟ କରିଲେ ଗୋଚର ।
ମାଧବ ବୋଇଲେ ମୁହିଁ ରଣ କରି ନାହିଁ
ମନେ ଭାବିଲେ ପ୍ରସନ୍ନ ଅଛି ମହାମାୟୀ ।
ନିରେଖି ଚାହିଁଲେ ବେଗେ ଦେବୀଙ୍କ ବଦନ
ବାମକକ୍ଷେ କ୍ଷତ ଚିହ୍ନ ଦେଖିଲେ ବହନ ।

ଦେବୀଙ୍କି ପ୍ରଣାମ କରି ହୋଇଲେ ବାହାର
ସୈନ୍ୟସେନା ନୃତ୍ୟକର୍ମ ସାରିଲେ ସତ୍ୱର ।
ଷଷ୍ଠଦିନ ଯୁଦ୍ଧପାଇଁ ସୈନ୍ୟ ସଜାଇଲେ
ବେଳ ସାତ ଦଣ୍ଡଠାରେ ବାହାର ହୋଇଲେ ।
ଦଳବେହେରା ସାମନ୍ତ ମହାବଳବନ୍ତ
ଦୁହାଯୁଦ୍ଧେ କ ବାହାର ହେଲେ ସଚିକାନ୍ତ ।
ସମ୍ବର ଯୁଦ୍ଧେ କ ବିଜେ ଶ୍ରୀମୀନକେତନ
ରାବଣ ମାରିବାକୁ ବିଜେ କଲେ ରାମ ।
ପର୍ଶୁରାମ ପରି ସେହି ତେଜ ପ୍ରକାଶିଲେ
ଉଭୟ ଦଳ ସେଠାରେ ଭେଟାଭେଟି ହେଲେ ।
ସୈନ୍ୟବଳ ଯେମନ ଯୋଟିଗଲେ ଅସୁରଙ୍କୁ
ଅଶ୍ୱ ଧୂଆଇଣ କରେ ଧରି କୃପାଣକୁ ।
ହସ୍ତେଶ୍ୱରୀ ଦେବୀମାନେ ମଧ୍ୟେ ସାହା ଅଛୁ
ପାଇକମାନଙ୍କ ସୈନ୍ୟ ନ ମରନ୍ତି କଛୁ ।
ଅନେକ ଅସୁରସୈନ୍ୟ ହୋଇଲେ ସଂହାର
ରାଉତରାଙ୍କର ତେଜ ମହାଭୟଙ୍କର ।
ଅସୁର ସଇନ ଆଉ ସହି ନପାରିଲେ
ପଛଘୁଞ୍ଚା ଦେଇ କରି ସର୍ବେ ପଳାଇଲେ ।
ଗୋଡ଼ାଇ ମାରୁଅଛନ୍ତି ପାଇକ ସଇନ
କେତେ ସୈନ୍ୟ ମଲେ ତାହା ନୁହଇ ଗଣନ ।
ବାକି ସୈନ୍ୟ ତହୁଁ ବେଗେ ପଳାଇଲେ
ଅତିକଷ୍ଟେ ଦଣା ପାଶରେ ମିଳିଲେ ।
କର୍ଣ୍ଣେଲ ହାର୍କଟ ବାଜ ଚିଠି କରି ଖରେ
ପଠାଇଲେ ଯାଇ ଖୋର୍ଦ୍ଧା ସାହେବ ପାଶରେ ।
ଯୁଦ୍ଧକଥାମାନ ସବୁ କହିଲା ବୁଝାଇ
ରାଉତରଙ୍କୁ ଜିଣିବା ଆଉ ଆଶା ନାହିଁ ।
ଯେତେ ଅସ୍ତ୍ର ଆମ୍ଭେମାନେ କରିଲୁ ଗୃଜନ
ମାରି ନ ପାରିଲୁ ତହୁଁ ପାଇକ ସଇନ ।
ଶୁଣିକରି ସାହେବ ଯେ ଅତି ଦୁଃଖକଲା
କରଣ ମଧୁସୂଦନକୁ ପାଶେ ଡକାଇଲା ।

ସମସ୍ତ ବିଷୟ ତାକୁ କହିଲା ବୁଝାଇ
ମାଧବକୁ ଜିଣିବାକୁ ଆଉ ଆଶା ନାହିଁ ।
ଏହା ଶୁଣି ମଉସମ କହଇ ବୁଝାଇ
ତାହାକୁ ଯେ ହସ୍ତେଶ୍ୱରୀ ସାହା ଅଛି ରହି ।
ପୁଣି ଏକ ଅସ୍ତ୍ରାଗାର ଅଛଇ ତାଙ୍କର
ଗଡ଼ ପଶ୍ଚିମ ଦ୍ୱାରେ ଜଙ୍ଗଲ ମଧ୍ୟର ।
ଗୁପତ ସ୍ଥାନ ଯେ ତାକୁ କେହି ନ ଦେଖନ୍ତି
ଦଶ ହଜାର ସୈନ୍ୟ ପାଇଁ ଅସ୍ତ୍ର ଅଛି ।
ଅସ୍ତ୍ରାଗାର ଯେ ଦେଖରେ ଅନ୍ୟାୟ
କଲେ ନିଶ୍ଚେ ଆମ୍ଭ ପକ୍ଷ ହୋଇବଟି ଜୟ ।
ନୋହିଲେ ମାଧବେ ଜାଣିବାର ଅସମ୍ଭବ
ଗୁପତ କଥା ବ୍ୟକତ କରିଲ ମୁଁ ସବ ।
ଖୋର୍ଦ୍ଧା ସାହେବ କର୍ଣ୍ଣେଲ ପୁଣି ମଉସୁମ
ଡକାଇଲେ ମହଯୁତ ରହିଥିବା ସୈନ୍ୟ ।
ତିନିଶହ ସୈନ୍ୟ ଅସ୍ତ୍ରାଗାର ଦଖଲରେ
ପଠାଇଲେ ଗରଲଆ ସେନାପତିତ୍ୱରେ ।
ସୈନ୍ୟମାନେ ତହୁଁ ଶୀଘ୍ର ହୋଇଲେ ବାହାର
ଦକ୍ଷିଣ ମୁଖ ହୋଇଣ ଜଙ୍ଗଲ ଭିତର ।
ତହୁଁ କର୍ଣ୍ଣେଲ ହାରବର୍ଟ ବାଖର ଚଢ଼ିଲା
ନିଜ ସୈନ୍ୟ ପାଶେ ଯାଇ ପ୍ରବେଶ ହୋଇଲା ।
ପୁଣି ସେହି ଦୁଷ୍ଟ ଯେ ଅସୁର ବଧ କଲା
ଗୁଳବାରୁଦରେ ଗୋରକ୍ତ ଗୁଳାଇ ରଖିଲା ।
ଆନନ୍ଦମନେ ଯୁଦ୍ଧକୁ ହୋଇଲା ବାହାର
ସପ୍ତମ ଦିନ ଯୁଦ୍ଧକୁ ହେଲା ଆଗଭର ।
ବୀରବାଜା ବଜାଇଣ ପତାକା ଉଡ଼ାଇ
ପ୍ରବେଶ ହୋଇଲେ କାଣ୍ଡଗୋଦାଠାରେ ଯାଇ ।
ଏଣେ ରାଉତରାୟ ନିଜ ସୈନ୍ୟବଳ ଘେନି
ପ୍ରବେଶ ହୋଇଲେ ତହିଁ କରି ଘୋର ଧ୍ୱନି ।
ବାଟେ ଯାଉ ଦେଖନ୍ତି ସେ ଅଶଙ୍କୁନ ଚିହ୍ନ
ରାଉତରାଙ୍କର ମନ ହୁଏ ଛନ୍ନ ଛନ୍ନ ।

ବେନଦଳ ମେଳ ହୋଇ କଲେ ଘୋର ରଣ
ଏଥି ଉତ୍ତରୁ ଭଗବନ୍ତ ଅନ୍ୟ କଥା ଶୁଣ ।
ତେଣେ ଝୁରଧାର ସୈନ୍ୟ ବେଗେ ଚଳିଗଲେ
ହାଣ୍ଡିଆ ପାହାଡ଼ ପାଖେ ପ୍ରବେଶ ହୋଇଲେ ।
ଗୁପତରେ ସୈନ୍ୟବଳ ଅସ୍ତ୍ରାଗାର ପାଶ
ପହଞ୍ଚିଲେ ଯାଇ ମନେ ବହୁ ଅଛି ତୋଷ ।
ଦଳାଇ ଗୁମାନ ସିଂହ ଯେ ସାମନ୍ତରାୟ
ପାହାନ୍ତା ସିଂହ ଥାନ୍ତି ଯେ ବଳବନ୍ତରାୟ ।
ଏହି ଗୃରଜଣ ବଳେ ଟଗୃଶ ସଇନ
ଦୁଇଗୋଟା ହସ୍ତୀ ରହିଥାନ୍ତି ମୃସଦାନ ।
ଗୁଇନ୍ଧା ପାଇଣ ଗୋରା ସୈନ୍ୟ ଚଳିଗଲେ
ଅସ୍ତ୍ରାଗାରକୁ ସେ ବଳେ ଆକ୍ରମଣ କଲେ ।
ରକ୍ଷକଗଣ ତାହାଙ୍କୁ ଗୃଢ଼ଣ ନ ଦେଲେ
ଘଡ଼ିଏ ପର୍ଯ୍ୟନ୍ତ ମହା ସମର କରିଲେ ।
ଚହୁଁ ବାରି ଚଳାଇଲେ ପାଇକଙ୍କ ବଳ
ଫିରିଙ୍ଗି ସଇନ ମାଡ଼ି ବଢ଼ିଲେ ସେ କାଳ ।
ବାରୁଦ ଝଣିରେ ବେଗେ ଅଗ୍ନି ଲଗାଇଲେ,
ଅସ୍ତ୍ରାଗାର ଗୃହ ପାଶ ବେଢ଼ିଣ ରହିଲେ ।
ଏଣେ ଲଗିଥିଲା ମହା ବିଷମ ସମର
ଗୁପ୍ତେ ହସ୍ତେଶ୍ୱରୀ ହୋଇ ଆଗଭର ।
ଗଉଡ଼ବାଙ୍କର ତେଜେ ଅଛି ଅନର୍ଗଳ
ସହି ନପାରି ଗୋରାଏ ହେଲେ କଲବଲ ।
ତାହାଦେଖି କର୍ଣ୍ଣେଲ ହାବର୍ଟ ରାଗରେ
ଗୋରକ୍ତ ଗୁଳି ଗୋଳାକୁ ପେଶିଲେ ସେ ଖରେ ।
ଦେଖିକରି ହସ୍ତେଶ୍ୱରୀ ଆଢ଼ୁ ହୋଇଗଲା
ମନେ ଭାବିଲା ଯେ କାଳ ବିପରୀତ ହେଲା ।
ଅସୁରମାନେ ଯେ ଅତି ଅନ୍ୟାୟକୁ କଲେ
ଆଜି ରକ୍ଷା ନ ପାଇବେ ଏ ପାଇକ ବଳେ ।
ଶହେ ପାଇକ ସଇନ କରିଣ ସଂହାର
ଜୟ ପତାକା ଉଡ଼ାଇ ଗଲେ ସେ ଅସୁର ।

ଏଣେ ଫେରିଲେ ଯେ ସର୍ବ ପାଇକଙ୍କ ବଳ
ସୈନ୍ୟ ହତ ଦେଖି ସର୍ବେ ହୁଅନ୍ତି ବିକଳ ।
ହସ୍ତେଶ୍ୱରୀ ଦେବୀ ପାଶ ହୋଇଲେ ପ୍ରବେଶ
ବସିଲେ ମାଧବ ଯେ ହୋଇଣ ବିରସ ।
ଅସ୍ତ୍ରାଗାରୁ ବାହାର ଚଳାଇଲେ ଯେଉଁ ସୈନ୍ୟ
ପ୍ରବେଶ ହୋଇଲେ ରାଉତରାଙ୍କ ପାଶେଣ ।
ସମସ୍ତ ଚରିତ ତାଙ୍କୁ ବୁଝାଇ କହିଲେ
ଶୁଣିକରି ଶ୍ରୀ ସାମନ୍ତ ମହା ଦୁଃଖି ହେଲେ ।
ବୋଇଲେ ହସ୍ତେଶ୍ୱରୀଙ୍କ କୃପା ଆଜ ଶୂନ୍ୟ
ଗଡ଼ ତାପଙ୍ଗ ହାରିଲୁ ସର୍ବେ ତୁମ୍ଭେ ଜାଣ ।
ଧନ ଲୋଭେ ମଉସମ ମନ୍ଦ ଆଚରିଲା
ସମସ୍ତ ଗୁପ୍ତ ଖବର ଗୋରାଙ୍କୁ କହିଲା ।
ଯେଉଁ ଗୁପ୍ତ ଅସ୍ତ୍ରାଗାର କେହି ନଜାଣନ୍ତି
ମଧୁସୂଦନ ବୁଦ୍ଧିରେ ଗୋରାଏ ନଅନ୍ତି ।
କୂଟକପଟ କରିଣ କରଣ ମଉସମ
ରାମାୟଣ ଯୁଦ୍ଧେ ଯେସନ୍ତେ କଲା ବିଭୀଷଣ ।
କୂଟକରି ଭେଦ କରି ତାର କଲା ବଂଶ ନାଶ
ମଉସମ ସେହିପରି ନାଶିଲା ସର୍ବସ୍ୱ ।
ଏତେ କହି ରାଉତରା ନୀରବ ରହିଲେ
ଭୋଜନ ନକରି ଦେବୀ ପାଶରେ ଶୋଇଲେ ।
ରାତ୍ର ଅଧେ ଶ୍ରୀ ସାମନ୍ତ ଦେଖିଲେ ସ୍ୱପନ
ହସ୍ତେଶ୍ୱରୀ ଦେବୀ ଆସି ପାଶରେ ବସିଣ ।
କହୁଛନ୍ତି ଆରେ ପୁତ୍ର ଆଉ ରକ୍ଷା ନାହିଁ
ଅସୁରମାନେ ଅନ୍ୟାୟ କଲେ ମୋହଠାଇଁ ।
ଗୋରକ୍ତ ଗୋଳା ଗୃହକୁ ମାଇଲା ସେ ଖରେ
ଅନ୍ୟାୟ ଦେଖି ମୁଁ ଅଡ଼ ହୋଇଗଲି ଖରେ ।
ତେଣୁ ରଣ ଜୟକରି ଅସୁରେ ଯେ ଗଲେ
ଯୁଦ୍ଧ ନକର ଆଉ ବୋଲିଣ କହିଲେ ।
ଅସୁର ବୁଦ୍ଧି ତାଙ୍କର ନାହିଁ ଧର୍ମ ଜ୍ଞାନ
ଆଜ୍ଞା ଯୁଦ୍ଧ ନକରିଣ ହୁଅ ତୁ ଗୋପନ ।

ସ୍ୱପ୍ନ ଦେଖି ଶ୍ରୀ ସାମନ୍ତ ହୁଅନ୍ତି ବିକଳ
ଉଠିକରି ଡକାଇଲେ ସର୍ବ ସୈନ୍ୟବଳ ।
ସ୍ୱପନ ଚରିତ ସବୁ ବୁଝାଇ କହିଲେ
ଆଜ ଯୁଦ୍ଧ ନକରିବା ଦେବୀ ଆଜ୍ଞା ଦେଲେ ।
ରାଜ ନ ପାଉଣୁ ଫେରିଯାଅ ସର୍ବ ସୈନ୍ୟ",
ମୁହିଁ ଯାଇ ଗୋପନରେ ରହିଥିବି ଜାଣ ।
ଏହା ଶୁଣି ଦୁଃଖମନେ ସର୍ବେ ଚଳିଗଲେ
କି କଲି କି କଲି ମତ୍ତସମ ସେ ବୋଇଲେ ।
ମନଦୁଃଖେ ଶ୍ରୀ ସାମନ୍ତ ଗୃହତେ ଚଳିଲେ
ସୈନ୍ୟମାନେ ସର୍ବେ ହାହାକାର ଯେ କରିଲେ ।
ଗଡ଼େ ନରନାରୀମାନେ କରନ୍ତି ରୋଦନ
ପଚ୍ଛେ ଗୋଡ଼ାଅନ୍ତି କୁଳ ମର୍ଯ୍ୟାଦା ଛାଡ଼ିଣ ।
ବୁଝାଇ କହୁଅଛନ୍ତି ସେ ମାଧବ ବୀର
ଗୁପ୍ତେ ରହି ବୁଝୁଥିବି ସର୍ବ ସମାଚାର ।
କାଳ ଆସି ବିପରୀତ ହୋଇଲଣି ଜାଣ
ମଜ୍ଭୂମି ଭଅଇଲି ଏସବୁ କାରଣ ।
ନାନା କଥା କହି ତାଙ୍କୁ ବିଦାୟ କରିଲେ
ବୀର ବେଶ ଛାଡ଼ି ବେଗେ ବନସ୍ତେ ପଶିଲେ ।
କହଇ ମଧୁସୂଦନ ଆହେ ଚକାଡୋଳା
ଲଗାଇଛ ଏ ସଂସାରେ ତୁମେ କେତେ ଲୀଳା ।
ରାଜପୁତ୍ର ହୋଇ ତାଙ୍କୁ ଦିଅ ବନବାସ
ଭିକ୍ଷୁକଙ୍କୁ ରାଜା କର ଏ ତୁମ ରହସ୍ୟ ।
ଯାହା ମୁଁ ଦେଖି ଶୁଣିଲି କରିଲି ଲେଖନ
ବିପ୍ର ମଧୁସୂଦନର ଦୋଷକୁ ନ ଦେନ ।

—o—

କହୁଛନ୍ତି ଦିଗବାସ ଶୁଣ ଗୋ ଭବାନୀ
ଏଥି ଉତ୍ତାରୁ ଯାହା ହେଲା କହୁଛି ବଖାଣି ।
ମାଧବଚନ୍ଦ୍ର ଯେ ତହୁଁ ଲୁଚି ଚାଲିଗଲେ
ସନ୍ଧ୍ୟାବେଳେ ବଂଡ଼ପାରି ଦୁର୍ଗରେ ମିଳିଲେ ।

ଶ୍ରୀ ଭ୍ରମରବର ରାୟ ତାହାଙ୍କ ଶ୍ୱଶୁର
ବୁଝାଇ କହିଲେ ତାଙ୍କୁ ସମସ୍ତ ଖବର ।
ଗୁପ୍ତ ବେଶ ହୋଇ ତହିଁ ଦୁଃଖରେ ରହିଲେ
ଏଣେ ଗୋରା ସୈନ୍ୟ ଆସି ଯୁଦ୍ଧରେ ମିଳିଲେ ।
ଦେଖିଲେ ଯୁଦ୍ଧ ପଦାରେ ନାହାନ୍ତି ଯେ ସୈନ୍ୟ
ହସ୍ତେଶ୍ୱରୀ ଠଣା ପାଶେ କରିଲେ ଗମନ ।
ଦେଖିଲେ ସୈନ୍ୟ ସାମନ୍ତ କେହି ଯେ ନାହାନ୍ତି
ଗଡ଼େ ପଶିଲେ ଗୋରାଏ ହୋଇ କୋପମୂର୍ତ୍ତି ।
ଜପ୍ତକରି ଅସ୍ତ୍ରାଗାରୁ ଅସ୍ତ୍ର ବୋହି ନେଲେ
ଖୋରଧା ସାହେବ ପାଶେ ପ୍ରବେଶ ହୋଇଲେ ।
ଦେଖିକରି ସାହେବ ଯେ ସନ୍ତୋଷ ହୋଇଲା
ମଉସମେ ଡାକ ବହୁ ପୁରସ୍କାର ଦେଲା ।
ବହୁ ବୃତ୍ତି ନସ୍କର ଯେ ତାଙ୍କୁ ଛାଡ଼ିଦେଲେ
ନିମକ ହାରାମ ତହିଁ ଦରଜ ସେ କଲେ ।
କେତେ ଦିନେ ମାଧବଙ୍କ ଘରକୁ ତଲାସ
କରି ଧନରତ୍ନ ନେଲେ ସାହେବର ପାଶ ।
ପ୍ରଜାମାନଙ୍କୁ ବୁଝାଇ କର ସେ ମାଗିଲେ
ଭୟେ ଗଡ଼ ତାପଙ୍ଗ ପ୍ରଜା କର ଯାଚି ଦେଲେ ।
ସମସ୍ତ ରାଜ୍ୟ ହୋଇଲା ଫିରିଙ୍ଗି ଅଧିକାର
ଲୁଣମରି ଘାଟ ଅଟେ ଚିଲିକା କୂଳର ।
ସୁବାଦାର ଜମାଦାର ସିପାହି କ ରାଇ
ଲୁଣମରି ଜବତ କର ବେଗେ ଯାଇ ।
ଏହା ଶୁଣି ସିପାହି ଯେ ମେଳ ହୋଇ ଗଲେ
ଲୁଣମରି ଘାଟଠାରେ ପ୍ରବେଶ ହୋଇଲେ ।
ଯୁବକ ଯୁବତୀ ବୁଢ଼ା ମାରୁଛନ୍ତି ଲୁଣ
ନାନା ଅତ୍ୟାଚାର ସୈନ୍ୟ ଘଟାଇଲେ ପୁଣ ।
ଯୁବାନାରୀଙ୍କି ବଳେ ଉଲଗ୍ନ କରନ୍ତି
ବାଣର ଗୁଣ୍ଠ ଧରିଣ କାହାକୁ ପିଟନ୍ତି ।
ଏ ବାରତା ପାଇଲେ ଯେ ଶ୍ରୀ ମାଧବ ବୀର
ବନ୍ଧୁକ ଧରି ଘୋଡ଼ା ଚଢ଼ିଲେ ସେ ଖର ।

ଚଲିକା କୁଳରେ ଯାଇ ପ୍ରବେଶ ହୋଇଲେ
ନାନା ଅତ୍ୟାଶ୍ଚର୍ଯ୍ୟମାନ ସେଠାରେ ଦେଖିଲେ । '
ଗରିବଙ୍କ ଦୁଃଖ ଦେଖି ହୋଇଲେ ଅସ୍ଥିର
କ୍ଷୀର ରକତ ଉଚ୍ଛୁଳି ପଡ଼ିଲା ତାଙ୍କର ।
ବନ୍ଧୁକ ଉଠାଇ ବେଗେ ବେଗେ ଛିପି ଦେଲେ
ସୁବାଦାର ଜମାଦାର ଦୁହିଁଙ୍କ ମାରିଲେ ।
ତହୁଁ ଯାଇ ରହିଲେ ସେ ଶ୍ୱଶୁରଙ୍କ ଘର
ଫିରିଙ୍ଗି ବଳରେ ପଡ଼ିଗଲା ହାହାକାର ।
ତହୁଁ ଗୋରା ସୈନ୍ୟ ପଳାଇ ଯେ ଗଲେ
ଖୋରଧା ସାହେବ ପାଶେ କାରଣ କହିଲେ ।
ଶୁଣିକରି ସାହେବ ଯେ ହେଲା କୋପଭର
ବୋଇଲା ଏକଥା ଘଟାଇଲା କେ ପାମର ।
ତାର ପରଦିନ ଦୁଇଶହ ସୈନ୍ୟବଳ
ବେଗେ ସାହେବ ପଠାଏ ସୁଣ ସୁଣ ପୁର ।
ବୋଲେ ଏକଥା ଘଟାଇଅଛି ଯେଉଁଜନ
ମୁଣ୍ଡ ତାହାର କାଟିବା ବେଗେ ଧରିଆଣ ।
ଏହା ଶୁଣି ସୈନ୍ୟଗଣେ ବେଗେ ଚଳିଗଲେ
ଦୁଇଦିନ ପରେ ଲୁଣ ଖଣିରେ ମିଳିଲେ ।
ଲୁଣ ମାରିବା ଲୋକଙ୍କୁ ଧରିଆଣି ପୁଣ
ଅନେକ ମାଡ଼ ମାଇଲେ ସେ ଗୋରା ସଇନ ।
ବହୁତ ସଂଧାନ କରି ଭେଦ ନ ପାଇଲେ
ପାଞ୍ଚ ଦିନେ ଜାଣିଲେ ମାଧବ ଏହା କଲେ ।
ତହୁଁ ଲୁଣ କର ଜଉରେ ଆଦାୟ କରିଣ
ଖୋରଧାକୁ ଚଳିଗଲେ ସବୁ ଗୋରା ସୈନ୍ୟ ।
ସାହେବ ଆଗରେ କହିଲେ ସକଳ ଚରିତ
ତାପଙ୍ଗ ଦଳବେହେରା କରିଅଛି କୃତ୍ୟ ।
ଶୁଣିକରି ସାହେବ ଯେ ଅତି କୋପ ହେଲା
ମଉସମକୁ ସେ ପାଶେ ଡକାଇ ଆଣିଲା ।
ସମସ୍ତ ଚରିତ ତାଙ୍କୁ ବୁଝାଇ କହିଲା
ଶୁଣି ମଉସମ କହେ ଏକଥା ସତ୍ୟ ହେଲା ।

ଗଡ଼ ବଡ଼ପାର ଭ୍ରମରା ଅଟନ୍ତି ତା ଶ୍ୱଶୁର
ଗୁପତେ ରହିଛୁ ଯେ ତାହାର ମନ୍ଦିର ।
ବାଣପୁରୁ, ରଣପୁରୁ ଲୋକଙ୍କର ମେଳ
ଦୁଣି ସମର କରିବ ଆସି ମହାବଳୀ ।
ଶୁଣି ସାହେବ ଯେ ଅତି କୁପିତ ହୋଇଲା
ବଡ଼ପାର ଗଡ଼େ ଗୁପ୍ତ ଚର ପଠାଇଲା ।
ଚରମାନେ ଗୁପତେ ବୁଝିଲେ ଖବର
ମାଧବ ରହିଅଛନ୍ତି ବଡ଼ପାର ଗଡ଼ର ।
ଗୁପ୍ତଚରମାନେ ଯେ ସାହେବେ କହିଲେ
ମାଧବ ନଷ୍ଟେ ଅଛୁ ବଡ଼ପାର ଗଡ଼େ ।
ସାହେବ ଶୁଣିଣ ଅତି କୁପିତ ଯେ ହେଲା
ଦୁଇଶ ସୈନ୍ୟବଳ ବଡ଼ପାରକୁ ପେଷିଲା ।
ଏ ବାରତା ପାଇଲେ ଯେ ଯେ ମାଧବ ବୀର
ଗୁପତେ ରହିଲେ ଯାଇ ଜଙ୍ଗଲ ଭିତର ।
ଗୋରା ସୈନ୍ୟ ବଡ଼ପାର ଗଡ଼ରେ ମିଳିଲେ
ଶ୍ରୀ ସାମନ୍ତର ଭେଟ କେହି ନ ପାଇଲେ ।
ପନ୍ଦରଦିନ ସେଠାରେ ଛାଉଣି ପାତିଲେ
ମାଧବେ ଭେଟ ନ ପାଇ ସାହେବେ କହିଲେ ।
ଏହିପରି କେତେକାଳ ତହିଁ ବହିଗଲା
ଗୁପତ ଚର ଅନେକ ସାହେବ ପେଷିଲା ।
କେବେ ଭେଟ ନ ପାଇଲେ ସେ ସାହେବଙ୍କ ଚର
ଯେ ଧରିବ ସୁନାଥିଲା ନେବ ପୁରସ୍କାର ।
ଟମକ ବଜାଇ ସାରା ଖୋରଧା ପୁରର ।
ଧନଲୋଭେ ବହୁଜନ ଗୁପତେ ଖୋଜିଲେ
ଶ୍ରୀ ସାମନ୍ତଙ୍କର ଭେଟ କେହି ନପାଇଲେ ।
କହେ ବିପ୍ର ମଧୁ ଆହେ କମଳଲୋଚନ
ଶ୍ରୀ ସାମନ୍ତଙ୍କର ଦୁଃଖ କର ହେ ମୋଚନ ।

---

ଏଥିଅନ୍ତେ ଯାହା ହେଲା ଶୁଣ ଗୋ ଗୋଁସାଁ
ମାଧବ ଭେଟ ନ ପାଇ ଗୋରା ଗୁର ଫେର
ଏହିପରି କଷ୍ଟଦେନ ତହୁଁ ହେଲା ପାର
ଶ୍ରୀ ସାମନ୍ତ ବସିଛନ୍ତି ଜଙ୍ଗଲ ଭିତର ।
ଏକ କେଉଟ ବୁଢ଼ା ଯେ ତାହାଙ୍କୁ ଭେଟିଲା
ଗଡ଼ ତାପଙ୍କୁ ବାଟ କଏ ସେ ବୋଇଲା ।
ତାପଙ୍କ କାହିଁକି ଯିବ ବୋଲନ୍ତି ସାମନ୍ତ
ଧୀବର ବୁଢ଼ା କହିଲା ତା ଦୁଃଖ ଚରିତ ।
ବେପାର ନାବ ଖଣ୍ଡିକ ଜଳରେ ବୁଡ଼ିଲା
ନିଆଁ ଲାଗି ଘରଖଣ୍ଡି ମୋର ପୋଡ଼ିଗଲା
ତାପଙ୍କ ଦଳବେହେରା ଅଟେ ମହାଦାନୀ
ଯାଉଅଛି କିଛି କରିବାକୁ ମୁଁ ମାଗୁଣି ।
ମୋହର ଘର ଅଟଇ ସୋରଣ ଗଡ଼
ସାତଗୋଟି ପରିବାର କଷ୍ଟ ପାନ୍ତି ସେ ବଡ଼ ।
ବୁଢ଼ା କେଉଟ ଦୁଃଖରେ ଦୁଃଖି ହେଲେ ଶୁଣି
ବୋଇଲେ ଦଳବେହେରା ଅଟେ ମୁହିଁ ପୁଣି ।
ଆସ ମୋର ସଙ୍ଗେ ମୁହିଁ ଦେବି ତୋତେ ଧନ
ତୋହର ସମସ୍ତ ଦୁଃଖ ହୋଇବ ମୋଚନ ।
ଭାବିଲେ ଧନରତନ ପାଶେ ମୋର ନାହିଁ
କ ଦେଇ ତୋଷ କରିବ ଏହାକୁଟି ମୁହିଁ ।
ଖୋରଧା ସାହେବ ପଣ କରିଅଛି ପୁଣି
ତାପଙ୍କ ଦଳବେହେରା ଯେହୁ ଧରିଆଣି ।
ମୋର ପାଶେ ଦେବ ଦେବି ସୁନା ଥଳୀ ପୁରସ୍କାର
ଯାଉଛି ସେଠାକୁ ଯିବିଟି ନକର ।
ଏହିପରି ଲୋକଟିର ଦୁଃଖ ପାର ହେବ
ଶେଷରେ ଯାହା ବା ମୋର ଉପରେ ଘଟିବ ।
ଏତେ ଭାବି କେଉଟକୁ ସଙ୍ଗତରେ ନେଇ
ପ୍ରବେଶ ହୋଇଲେ ଖୋର୍ଦ୍ଧା କଚେରୀରେ ଯାଇ ।
ସାହେବ ଆଗରେ ଯାଇ ବେଗେ ଛିଡ଼ା ହେଲେ
କଏ ସେ ପୁଚ୍ଛନ୍ତି ସାହେବ ମାଧବ ବୋଇଲେ ।

ତାପଙ୍ଗ ଦଳବେହେରା ମୁହିଁ ଅଟଇ ଜାଣ
ଏ ଲୋକଟି ମୋତେ ଧରି ଆଣିଅଛୁ ପୁଣ ।
ସୁନାଥଳୀ ଗୋଟି ଆକୁ ଦିଅ ପୁରସ୍କାର
ପଣ କରିଅଛୁ ମୋତେ ଯାହା କଲେ କର ।
ଏହା ଶୁଣି ସାହେବ ଯେ ନିରବ ରହିଲା
କି ଆଶ୍ଚର୍ଯ୍ୟ କଥା ବୋଲି ମନରେ ଭାବିଲା ।
ଦୁଇଜଣଙ୍କୁ ନେଇଣ ବନ୍ଦୀରେ ରଖିଲେ
ତାର ପରଦିନ ଧୀବର ବୁଢ଼ାକୁ ଡାକିଲେ ।
ତାହାଠାରୁ ସମସ୍ତ ବାରତା ବୁଝିଲେ
ଉପର ହାକିମ ପାଶେ ଖବର ଯେ ଦେଲେ ।
ଏହିପରି କେତୁଦିନ ତହିଁ ବହିଗଲା
ଉପର ହାକିମ ପାଶୁ ଆଦେଶ ହୋଇଲା ।
ଆଦେଶ ପତ୍ରରେ ଏହା ଲେଖା ଅଛୁ ହୋଇ
ମହାଦାମୀ ବୀର ଏହି ମାଧବ ଅଟଇ ।
ଆକୁ ଦଣ୍ଡ ଦେଲେ ଖୋର୍ଦ୍ଧା ଶାନ୍ତ ନ ହୋଇବ
ପୁଣି ଗଣ୍ଡଗୋଳ ଆସି ଉପସ୍ଥିତ ହେବ ।
ଛାଡ଼ିଦିଅ ଏହାକୁ ଯେ ବୁଝାଇ ଶୁଝାଇ
ସାହେବ ଯେ ସେହି ଛାଡ଼ପତ୍ରକୁ ପାଇ ।
ଛାଡ଼ି ଦେଲେ ମାଧବକୁ ସବୁ ବୁଝାଇଣ
ଆନନ୍ଦରେ ଶ୍ରୀ ସାମନ୍ତ କରିଲେ ଗମନ ।
ତାପଙ୍ଗ ଗଡ଼ରେ ଯାଇ ହୋଇଲେ ପ୍ରବେଶ
ଦେଖି ଗଡ଼ ନରନାରୀ ହୁଅନ୍ତି ହରଷ ।
ଚନ୍ଦ୍ରମା ଦେଖିଣ ଯେହ୍ନେ ଚକୋରର ମନ
ସେପରି ଆନନ୍ଦ ଯେ ହୋଇ ଗୋବର୍ଦ୍ଧନ ।
ଚିରକାଳ ଦୁଃଖ ଯେହ୍ନେ ପାଏ ଚିନ୍ତାମଣି
ସେପରି ଆନନ୍ଦ ହୁଏ ତାପଙ୍ଗ ଧରଣୀ ।
ବିପ୍ର ବୋଲେ ହରେଶ୍ୱରଙ୍କ କୃପାରୁ
ଶ୍ରୀ ସାମନ୍ତ ଉଦ୍ଧରିଲେ ଫିରିଙ୍ଗି ହାତରୁ ।
ଫିରିଙ୍ଗି କଳି ଭରତ ଏଥୁ କରି ଶେଷ
ଦୋଷ ମୋହର ନ ଧର ସୁଜ୍ଞାନୀ ବିଦୁଷ ।

ପୁରୀଜିଲ୍ଲା ମଧ୍ୟେ ଅଟେ ସାନପୁଟ ଗଡ଼
ତାହା ମଧ୍ୟରେ ବାସ ଅଟଇ ମୋହର ।
ଶ୍ରୀ ମଧୁସୂଦନ ବିପ୍ର ଅଟେ ମୋର ନାମ
ବେଲେଶ୍ୱର ଦେବଙ୍କୁ ମୁଁ କଲି ଆରାଧନ ।
ସୁଜନ ଜନ ମୋହର ନ ଧରିବ ଦୋଷ
ଦୟା କରନ୍ତୁ ତୁମ୍ଭଙ୍କୁ ସେହି ଦିଗବାସ ।
ବାରସ ବୟାଳିଶି ସାଲେ ଗ୍ରନ୍ଥ ହେଲା ଶେଷ
ମେଷ ପଚିଶ ଦିନ ଯେ ବୁଧ ହେ ବିଦୁଷ ।
ନୀଳାଞ୍ଚଳ ବାସୀ ପ୍ରଭୁ ହେ ଚକାନୟନ
ବାରେ କରୁଣା କର ଯେ ଡାକୁଅଛି ଦୀନ ।
କେତେ ପାପୀ ଅବା ତ୍ରିଭୁ ନାହିଁ ତୁମ୍ଭେ ତାରି
ନ ଶୁଣୁଛ କାହିଁ ତୁମ୍ଭେ ଗରିବ ଗୁହାରି ।
ଡାକି ଡାକି କରି ମୁହିଁ ହେଉଅଛି ବଣା
ବିପ୍ର ମଧୁସୂଦନରେ କର ହେ କରୁଣା ।

---

**ଟିପ୍ପଣୀ**—ତାଳପତ୍ର ପୋଥିରେ ଥିବା ସାଲ ତିଥିର ଇଂରାଜୀ ତାରିଖ ନିମ୍ନରେ ପ୍ରଦତ୍ତ ହେଲା ।

୧୨୩୪ ସାଲ ବୃଷ ଦଶ ଦିନ — ତା ୨୩ । ୫ । ୧୮୨୭
୧୨୩୪ ,, ,, ୨୦ ,, — ତା ୨ । ୬ । ୧୮୨୭
୧୨୩୪ ,, ମିଥୁନ ୪ ,, — ତା ୧୭ । ୭ । ୧୮୨୭
୧୨୩୪ ,, ,, ୮ ,, — ତା ୨୧ । ୭ । ୧୮୨୭
୧୨୪୨ ,, ମେଷ ୨୫ ,, — ତା ୭ । ୫ । ୧୮୩୫

**Enclosure to letter dated 15.7.1817. from A. C. Molony Actg. Persian Secretary to govt. teritorial Department.**

*Extract translation from petition of Rajah Mukoond Dev to the Governor General, dated June 1817, received by government on the 3rd July 1817.*

" At noon on the 14th April, Jagbundoo the detested approached my house with a body of 2 or 3 thousand men and forced their way into the house and penetrated to the place where I was sitting and said "We Dalaees and Dalbeheras are all of one mind. It is proper that you proceed with the Ranees to the fort of Khoorda." My reply was "How is it that in your folly ye have rebelled against the English, the Lords of Hindustan and have undertaken this bad business and that ye thus endeavour to reduce me from my allegiance to the company into a participation in your guilt me who have long enjoyed their favour and protection?" To this Jagbundoo replied, 'The inhabitants of Khoorda have sustained in the moffussil a variety of injuries and oppressions from the Bengalees who are the officers under the English Government and who consider and declare themselves to be our masters while no redress is to be obtained at the Sudder by the poor and oppressed from the gentlemen in power, in consequence of the influence of those Bengalees and the favour shown to them, as an instance of which a seer of salt which used to be sold for 1 pan of cowries cannot at present be procured for 12 pans. Moreover where 1 rupee was once taken on account of revenue 10 are now exacted and after all there are often demands and balances. By the injustice of the Judges, the oppression of the wicked Thanadars and the tyranny of the officers of the salt Mahals the people are altogather overwhelmed and being unable to leave their loved native land are grown desparate and careless of life. They have accordingly with the intention to avenge their injuries appointed me, Jugbundoo Bhownerbur their

leader'. To this I replied 'why should I like those who forget benefactions, lose sight of the gratitude which I owe to the company? The English have conferred many benefits upon me. They have for example confirmed me in the office which I have long held in the temple of Jauggernauth Jee. Why then should I, not withstanding those objections, follow a course of wickedness the very reverse of what is just and like you wander through the woods and mountains after the manner of mad man?' Jugbundoo replied 'If you will comply with our request and join, I will carry with me to Khoorda both Jenamoni your son and your Ranee while you like a worshiper of God can remain here (i. e. at Juggernauth) and employ yourself in the discharge of religious duties'. As it had frequently happened in former times that treacherous Dewans and Bukshees murdered the Rajahs my forefathers and confirming the Raj upon a child of the family, followed without restraint the bent of their own inclinations, I became alarmed for my life and to preserve it I treated them as one treats fools—I deceived them into a belief that I consented to their wish by which I preserved my freedom in the hope of the arrival of the English troops. Thus for the space of 5 days did I put them off with false promises. On the 17th April I secretly despatched my Muktar (i. e manager) Purrostum Bhary with a letter to the Colonel, the Magistrate and collector, containing an account af all this and soliciting military aid. Of this nothing was known to Jagbundoo or the rest. At this time my servants and people were frieghtened into submission by Jugbundoo who when he learnt that Lt. Le Fevre was approaching by way of Kanas, took his sword and accompained by the paiks and attendants came to the door of my private apartments. On hearing this I shut the females in a room and looked the door and despairing of my life asked him "why following. Like him, a cause of folly, I should abondon the temple of Juggernauth and trust him with my infant son Jenamani?" adding that if he means

to murder me he had better do it there where from the sanctity of the place death would be salvation." At length Jugbundoo losing all hope either of my accompanying him or of getting my son into his hands plunedred the property of myself and of my people and left Purustom chutter. On departing he said to me 'you have now no longer any claim upon me as upon one who has eaten your salt'. Previously to his departure (on 17th April), I gave secret intimation of all that had taken place, to Lt. Le Fevre.

**Manscript Records, Letter dated 21. 7. 1819 from the secretary to the Commr. Orissa to the Chief Secretary to govt. at Fort William.**

---

*Translation of an Ooria chittao written jointly by Bukshee Jagabandhu Vidyadhar Bhramarbar Raee Mahapatre and Dewan Krishna Chandra Bhramarbar Raee, delivered to Mr. Melville, Jt. Magistrate, Puri.*

Jagabundoo Bownerbar Raee Bukshee of Orissa and Dewan Krishna Bhramarbar Raee offer their salutations to the English Gentlemen and beg to represent as follows:—

It is now 14 years since the province of Cuttack was conquered by the British arms. At that period Maharajah Mukoond Deo who was quite a youth was urged on by the evil counsels of Jye Rayegooroo, contrary to our earnest advice and remonstrances, to oppose the establishment of the British authority. He was accordingly taken prisoner and sent to Midnapore. Major Fletcher was then appointed to the charge of Khoorda. We from the beginning waited on that officer. We gave in Derkhausts specifying all the lands which ourselves and our ancestors from time immemorial had been permitted to hnold ret free under the heads of written Muhutteran Khereedgee and Jageer, both in Khoorda and in the 4 Pragannahs (viz. Limbaee, Rahung, Seraeen and Choubeescood) and we particularly urged our claims to the possession of Bukshee-Bar and Dewan Bar (valuable Mehals now annexed to Rahung). Major Fletcher however utterly disregarded our claims and resumed every particle of our lands, leaving us not a Bukhra nor a Bigha of ground. When the Maharaja was brought back from Midnapore and settled at Pooree with a fixed allowance for his maintenance, we ventured to represent our cases also to the authorities of Cuttack, stating that we were entirely destitute of the means of supporting our families and dependants amounting to upwards of 500 souls and that if they would but give possession

of our lands, we would agree to pay such revenue for them as it might be thought equitable to fix, on a fair consideration of our cases, not withstanding that we had enjoyed them rent free Jageers obtained by our ancestors many generations back under grants from the Maharajah and the Soobahdars of the province. Such was our ill fortune however that this request also was disregarded and further the Khoodhast Zemindaree of Killa Rorung which the Emperor of Delhi had conferred on the ancestors of one of us (the Bukshee) which his family has always held and which he himself was allowed to engage for under the British government during 3 successive years was taken away from him. Year after year he petitioned the local authorities for redress but in vain. He became in consquence reduced to a state of beggary and compelled to depend for his subsistence on the bounty of certain Zemindars. The Dewan also was brought into a similar condition being dispossessed of garh Chittri (chhatramagarh near Amaniatota in Khoorda) and other places ages since granted by the Rajahs to his family, under the British government convicted felons even are allowed food and clothing; what had we done that we should be so degraded and impoverished? Under the same government also how many Zemindars and Rajahs who have offended have not been pardoned and restored to their country and Estates ? But Rajah Mukoond Deo for an offence against the state committed in his youth at the sole instigation of a wicked and designing Minister was for nearly 14 years kept out of Khoorda and that country, the Guddee of Orissa, the seat of its ancient sovereigns abandoned to ruin and devastations. Had the Maharajah been placed in authority over his country according to former usage a population of 3,00000 souls would have prospered and been happy but from the Gudee being vacant they have perished. From Darootheng to Chuttergarh (or from the N. E. to S. W. extremity of Khoorda) the whole country was let out to farmers; where there were resources of 5 Rs. these farmers demanded payment of 15; salt rose from 1 pun to 5. Such

was the deplorable state of the ryots that they were obliged to subsist on herbs and water and scarcely one amongst them find a vessel left to drink his water out of; yet not withstanding the extremity of wretchedness no one took any notice of their condition. At length the people of the country came to us, who were distitute and impoverished like themselves, in a body and said we and you and Maharajah have sunk to the lowest stage of misery. This is now our plan; let us retire to the jungle and fix our abode there the lands will then become waste and no revenue be collected. It is possible that on seeing this the English may be induced to take our condition into consideration. Confirmably with this scheme the people of Khoorda retired into the jungles but the British Authorities instead of viewing their conduct in the light that was expected and sending a Vakeel, drew forth their armies and began slaughtering and devastating the country. At length from the good fortune of Sree Ramchander Deo and for the benefit of us, of the Maharajah and of the people of Khoorda the present rulers have visited the Province. Let our cases now then be taken fully into consideration and each man reinstated in his just rights. Let Maharajah Ramchandra Deo be placed on the Guddee of Khoorda, we restored to our ancient possessions and former condition and the people of Khoorda to a state of happiness and prosperity. Then, should any one hereafter commit crimes against Government we will undertake to destroy him with the sword and let this offence of Bukshee Jugbundoo Bhwonerber Raee be pardoned.

---

Manuscript Records, vol. 18. A. Letter dated 21. 7. 1819 from the secretary to the commr, Orissa to the chief secretary to Govt. at Fort william.